ବହୁ ଚିଠିପତ୍ର ମଧ୍ୟରୁ ଏ ପୁସ୍ତିକାରେ ମାତ୍ର କେତୋଟିର
ଫଟୋଚିତ୍ର ଦିଆଯାଇଛି ।

# ବୃହତ୍ତର ଉତ୍କଳ-ଗଠନରେ ବାଧାବିଘ୍ନ

## ( ଏକ )

୧୯୪୭ ଡିସେମ୍ବର ୧୪ ତାରିଖ ଓଡ଼ିଶା-ଇତିହାସରେ କେବଳ ନୁହେ, ଭାରତ-ଇତିହାସରେ ମଧ୍ୟ ଗୋଟିଏ ସ୍ମରଣୀୟ ଦିବସ । ସେହିଦିନ ଓଡ଼ିଶାର ୨୫ ଗୋଟି ଦେଶୀୟ ରାଜ୍ୟ ଓଡ଼ିଶା ସହିତ ମିଶିଯାଇ ଯେଉଁ ପରମ୍ପରା ସୃଷ୍ଟି କରିଥିଲେ ତାହା ସମ୍ପୂର୍ଣ୍ଣ ହେବାକୁ ମୋଟେ ଆଉ ୯ ମାସ ସମୟ ଲାଗିଥିଲା । ୧୯୪୮ ସେପ୍ଟେମ୍ବର ୧୮ ତାରିଖରେ ହାଇଦ୍ରାବାଦ୍‌ର ନିଜାମ ରାଜ୍ୟର ଶାସନଭାର ଭାରତସରକାରଙ୍କ ହାତରେ ସମର୍ପଣ କରିଦେଲେ ଓ ସେଥିସହିତ ସମଗ୍ର ଭାରତର ଦେଶୀୟ ରାଜ୍ୟ-ମାନଙ୍କରେ ଏକଚ୍ଛତ୍ର ଶାସନର ଅବସାନ ଘଟିଲା ।

ସ୍ୱାଧୀନ ଭାରତର ଏକତା ଓ ସଂହତି ପ୍ରତିଷ୍ଠା ଦିଗରେ ଓଡ଼ିଶାର ଯେଉଁ ଦାନ ରହିଛି ତାହା ସ୍ୱୀକାର କରି ସ୍ୱର୍ଗୀୟ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଲେଖିଥିଲେ

"Centuries ago it was the proud privilege of Kalinga to arouse awakening in a great monarch who became in course of time not only a great and wise sovereign and suzerain, but also a great guide, friend and philosopher of his people. Few had dreamt and none had imagined that it would be from the same land that will start a revolutionary change which would achieve for India the same measure of unity and strength and security which India had obtained under the distinguished ruler, Asoka."

"ବହୁ ଶତାବ୍ଦୀପୂର୍ବେ ଜଣେ ପ୍ରବଳପ୍ରତାପୀ ସମ୍ରାଟଙ୍କର ଏହି କଳିଙ୍ଗରେ ଚୈତନ୍ୟୋଦୟ ହୋଇଥିଲା । କାଳକ୍ରମେ ସେ ଯେ ଜଣେ ବିଖ୍ୟାତ ଓ ବିଜ୍ଞ ସାର୍ବଭୌମ ଶାସକରେ ପରିଣତ ହେଲେ ସେତିକି ନୁହେ, ତାଙ୍କ ପ୍ରଜାକୁଳର ସେ ହେଲେ ପ୍ରଧାନ ବନ୍ଧୁ, ପଥପ୍ରଦର୍ଶକ ଓ ଉପଦେଷ୍ଟା । ତାଙ୍କର ଏହି ହୃଦୟ-ପରିବର୍ତ୍ତନ ଘଟାଇବାର ଗୌରବ କଳିଙ୍ଗ ଭାଗ୍ୟରେ ପଡ଼ିଥିଲା । ସେତେବେଳେ କେହି ହୁଏ ତ କଳ୍ପନା କରି ନ ଥିଲେ ଯେ ସେହି ଭୂମିରେ ପୁଣି ଗୋଟିଏ ବୈପ୍ଲବିକ ପରିବର୍ତ୍ତନର ସୂତ୍ରପାତ ହେବ ଯାହା ଫଳରେ ସମ୍ରାଟ ଅଶୋକଙ୍କ ଶାସନାଧୀନରେ

ଭାରତର ସେହିଁ ଏକତା, ଶକ୍ତି ଓ ନବପନ୍ଥ ଥିଲା ତାହା ପୁଣି ଭାରତକୁ ଫେରି ଆସିବ ।”

ଓଡ଼ିଶାର ଏହି ଗୌରବମୟ କୃତିତ୍ୱର ଅନ୍ତରାଳରେ ଯେଉଁ ଘାତ ପ୍ରତିଘାତ ଓ ଘଟନାବଳୀର ସମାବେଶ ରହିଛି ସେ ସମ୍ବନ୍ଧରେ ଅବହିତ ନ ହେଲେ ବର୍ତ୍ତମାନ ବା ଭବିଷ୍ୟତର ଇତିହାସର ଗତି ଓ ଦିଗ ଯଥାର୍ଥଭାବେ ନିର୍ଣ୍ଣୟ କରି ହେବନାହିଁ ।

ଶାସନଗତ ଏକ୍ୟର ଦୃଷ୍ଟିରୁ ଓଡ଼ିଶାପ୍ରଦେଶ ଓ ତାହାର ପ୍ରତିବେଶୀ ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ଶାସନଗତ ସହଯୋଗ ଓ ପ୍ରୟୋଜନୀୟ ସମନ୍ୱୟ ହେବା ଯେ ନିତାନ୍ତ ଆବଶ୍ୟକ, ବହୁଦିନ ତଳେ ୧୯୨୮ ରେ ସାଇମନ୍ କମିସନ୍ ଏ ମତ ଦେଇଥିଲେ । ଏଭଳି ଗୋଟିଏ ବ୍ୟବସ୍ଥା ନ ହେବା ଯାଏଁ ଓଡ଼ିଶା ପୃଥକ୍ ପ୍ରଦେଶରୂପେ ଉନ୍ନତି କରିପାରିବ ନାହିଁ ଏ ପ୍ରକାର ସୂଚନା ସାର୍ ହ୍ୟଥର୍ଣ୍ଟ ଲୁଇସ୍‌ଙ୍କ ଭଳି ଅଭିଜ୍ଞ ଇଂରେଜଶାସକମାନଙ୍କ ଠାରୁ ମିଳିଥିଲେ ବି ତାହା କାର୍ଯ୍ୟକାରୀ କରାଯାଇ ପାରିଲା ନାହିଁ । ୧୯୩୬ ରେ ବ୍ରିଟିଶଶାସିତ କେତେଗୋଟି ଜିଲାକୁ ନେଇ ଓଡ଼ିଶା ସ୍ୱତନ୍ତ୍ର-ପ୍ରଦେଶ ରୂପେ ଗଠିତ ହେଲା । ୧୯୩୫ ମସିହା ଭାରତଶାସନ ଆଇନ ଅନୁଯାୟୀ ଦେଶୀୟ ରାଜ୍ୟଗୁଡ଼ିକୁ ପଲିଟିକାଲ୍ ଡିପାର୍ଟମେଣ୍ଟର ଅଧୀନରେ ରଖାଯାଇ ସେଠାରେ ପୂର୍ବପରି ଏକଚ୍ଛତ୍ର ଶାସନ ଚାଲୁ ରହିଲା । ପ୍ରଦେଶର ସଂସ୍ପର୍ଶରୁ ଦୂରରେ ରହି ଏହି କ୍ଷୁଦ୍ର ରାଜ୍ୟଗୁଡ଼ିକ ଯେପରି ନିରାପଦରେ ବ୍ରିଟିଶ ସରକାରଙ୍କର ସାମ୍ରାଜ୍ୟବାଦୀ ନୀତିକୁ ବଜାୟ ରଖିପାରିବେ ସେଥିପ୍ରତି ପଲିଟିକାଲ୍ ଡିପାର୍ଟମେଣ୍ଟ ସଜାଗ ଦୃଷ୍ଟି ରଖିଲେ । କିନ୍ତୁ ସେତେବେଳକୁ ବିଦେଶୀ ଶାସନ ବିରୁଦ୍ଧରେ ଜନଜାଗରଣ ଦେଶସାରା ତେଜି ଉଠିଥିଲା । ଦେଶୀୟ ରାଜ୍ୟମାନଙ୍କର ପ୍ରାଚୀର ଭେଦ କରି ଦେଶର ଏହି ଡାକ ଗଡ଼ଜାତବାସୀମାନଙ୍କୁ ଉଦ୍‌ବୁଦ୍ଧ କଲା । ଏକ ଦିଗରେ ପରମ ଆଶ୍ରୟସ୍ଥଳ ବ୍ରିଟିଶ ସରକାରଙ୍କ ଆସନ ଟଳମଳ ଓ ଅନ୍ୟଦିଗରେ ପ୍ରଜାମାନଙ୍କ ମଧ୍ୟରେ ଗୋଟିଏ ଅଭୂତ ଜାଗରଣ—ସବୁ ମିଶି ଯେଉଁ ଆଗାମୀ ବିପ୍ଳବର ସୂଚନା ଦେଲା ତାହାକୁ ପ୍ରତିରୋଧ କରିବାର କ୍ଷମତା ଓଡ଼ିଶା-ରାଜାମାନଙ୍କର ଆଉ ନ ଥିଲା । ୧୯୩୮ ରେ ଓଡ଼ିଶାରେ ଯେତେବେଳେ ଲୋକପ୍ରତିନିଧି ସରକାର କ୍ଷମତା ହାତକୁ ନେଇ ଶାସନ ଚଳେଇଲେ ଗଡ଼ଜାତ ବାସୀମାନଙ୍କ ମଧ୍ୟରେ ତାହାର ପ୍ରବଳ ପ୍ରତିକ୍ରିୟା ଦେଖାଗଲା ।

ଗଡ଼ଜାତବାସୀମାନଙ୍କର ଦାବୀ କଣ ଓ ତାକୁ ପୂରଣ କରିବାର ଉପାୟ ପ୍ରଭୃତି ଅନୁସନ୍ଧାନ କରିବା ପାଇଁ ଗୋଟିଏ ବେସରକାରୀ କମିଟି ନିଯୁକ୍ତ କରାଗଲା ଓ

ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଏହି କମିଟିର ଚେୟାରମ୍ୟାନ ରୂପେ ନିଯୁକ୍ତ ହୋଇଥିଲେ । କମିଟି ଯେଉଁ ରିପୋର୍ଟ ଦେଇଥିଲେ ତାହା ତତ୍କାଳୀନ ଗଭର୍ଣ୍ଣର ଜେନେରେଲ୍ ଲର୍ଡ଼ ଲିନଲିଥଗୋଙ୍କ ଭାଷାରେ "ଦେଶର ଗୋଟିଏ ଅନ୍ଧକାର କୋଣରେ ପ୍ରଥମ ଆଲୋକ ସମ୍ପାତ" ଥିଲା । ସାର୍ବଭୌମ ଶକ୍ତିର ବାହୁଚ୍ଛାୟା ତଳେ ଗଡ଼ଜାତ-ମାନଙ୍କରେ ଯେଉଁ ଏକଛତ୍ର ଶାସନ ଚାଲିଥିଲା ତାହାର ଗୋଟିଏ ଚିତ୍ର ଏହି ରିପୋର୍ଟରେ ଦିଆଯାଇଥିଲା । ଏହି କମିଟି ମତ ଦେଲେ ଯେ ଓଡ଼ିଶାରେ ଏହି ଛୋଟ ଛୋଟ ରାଜାମାନଙ୍କର ସନନ୍ଦ ରଦ୍ଦ କରାଯାଇ ସେମାନଙ୍କୁ ଆଳୀ, କୁଜଙ୍ଗ, କନିକା ଭଳି ଜମିଦାର ଶ୍ରେଣୀଭୁକ୍ତ କରାଯାଉ । କିନ୍ତୁ ୧୯୪୦ ରେ ଯୁଦ୍ଧ ଆରମ୍ଭ ହୋଇଗଲା ଓ ୧୯୪୫ ପର୍ଯ୍ୟନ୍ତ ଏ ସମ୍ପର୍କରେ ସବୁ ବଗୃର ଆଲୋଚନା ଉପରେ ଚାପା ପଡ଼ିଗଲା ଏବଂ ଗଡ଼ଜାତ ରାଜ୍ୟ ଓ ଓଡ଼ିଶା ମଧ୍ୟରେ ମିଳାମିଶା ହେବା ଦିଗରେ ଯେଉଁ ଅନୁକୂଳ ମତ ଗଢ଼ି ଉଠୁଥିଲା ତାହା ଦବାଇ ଦେବାକୁ ଚେଷ୍ଟା କରାଯାଉଥିଲା । ତା ପରେ ୧୯୪୬ରେ କ୍ୟାବିନେଟ୍ ମିଶନ୍ ଭାରତକୁ ଆସିଲେ । ଗଡ଼ଜାତରାଜ୍ୟମାନଙ୍କୁ ଓଡ଼ିଶା ସହିତ ମିଶାଇ ଦିଆଯାଇ ଗୋଟିଏ ଶାସନାନ୍ତର୍ଭୁକ୍ତ କରିବା ପାଇଁ ଗୋଟିଏ ବହୁଯୁକ୍ତିସମ୍ବଳିତ ସ୍ମାରକ ପତ୍ର କ୍ୟାବିନେଟ୍ କମିସନଙ୍କ ଆଗରେ ପେଶ୍ କରାଗଲା । ଏହି ମିଶ୍ରଣ ପ୍ରସ୍ତାବକୁ ଖଣ୍ଡନ କରି ଭଲ ଯୁକ୍ତି ଦର୍ଶାଇ ସରେଇକଳା ରାଜା ଓ ଅନ୍ୟାନ୍ୟ କେତେକ ରାଜା ମଧ୍ୟ ସ୍ମାରକ ପତ୍ରମାନ ପଲିଟିକାଲ୍ ଡିପାର୍ଟମେଣ୍ଟକୁ ଦେଇଥିଲେ । ଅନେକ ବଗୃର, ଆଲୋଚନା ପରେ ପଲିଟିକାଲ୍ ଡିପାର୍ଟମେଣ୍ଟଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ ସେମାନେ ଓଡ଼ିଶା ଓ ତାହାର ପଡ଼ୋଶୀ ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ଶାସନଗତ ସହଯୋଗର ବ୍ୟବସ୍ଥା କରାଇଦେବେ ।

ଛତିଶଗଡ଼ ଓ ଓଡ଼ିଶା ଦେଶୀୟ ରାଜ୍ୟମାନଙ୍କୁ ମିଶାଇ ଗୋଟିଏ ଶକ୍ତିଶାଳୀ ୟୁନିଟ୍ ଗଢ଼ିବା ଓ ତାହାପରେ ପୂର୍ବାଞ୍ଚଳ ୟୁନିୟନ୍ ଗଠନ କରିବାର ଉଦ୍ୟମ କିପରି ଚାଲିଥିଲା ତାହା ପରବର୍ତ୍ତୀ ଅଧ୍ୟାୟରେ ଆଲୋଚିତ ହୋଇଅଛି । ଏପରି କି ପୂର୍ବାଞ୍ଚଳ ଦେଶୀୟ ରାଜ୍ୟଗୁଡ଼ିକୁ ଏକତ୍ର କରି ସେମାନଙ୍କୁ ହାଇଦ୍ରାବାଦ୍ ସଙ୍ଗେ ମିଶାଇ ସୁଦୃଢ଼ ମେଣ୍ଟ ବାନ୍ଧିବାର ଚେଷ୍ଟା ଓ ଅଭିସନ୍ଧି କିପରି ଅଗ୍ରସର ହେଉଥିଲା ତାହାର ସୂଚନା ମଧ୍ୟ ମିଳିଥିଲା ।

ଏହିପରି ପରିସ୍ଥିତିରେ ଓଡ଼ିଶାର ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ ରାଜାମାନଙ୍କ ସହିତ ବ୍ୟକ୍ତିଗତ ଆଲୋଚନା କରି ସେମାନଙ୍କୁ ବୁଝାଇବାକୁ ଲାଗିଲେ ତାଙ୍କର ମୂଳ ପ୍ରସ୍ତାବର ପ୍ରକୃତ ରୂପ ଓ ଲକ୍ଷ୍ୟ । ଓଡ଼ିଶାର ଅଧିକାଂଶ ଜଳ ସମ୍ପଦ

ଭିତରେ ଖଣ୍ଡିଏ ଖଣ୍ଡିଏ ଟାପୁ ଭଳି । ସେମାନଙ୍କ ମଧ୍ୟରେ ଯୋଗସୂତ୍ର ରଖି ଶାସନ ଚଳେଇବାକୁ ହେଲେ ଗଡ଼ଜାତ ରାଜ୍ୟମାନଙ୍କର ସହଯୋଗ ଏକାନ୍ତ ଦରକାର । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ଓ ଉଭୟ ଅଞ୍ଚଳର ମଙ୍ଗଳ ଓ ସୁବିଧା ଦୃଷ୍ଟିରୁ ଗଡ଼ଜାତ ରାଜ୍ୟ ଓ ଓଡ଼ିଶା ପ୍ରଦେଶ ଭିତରେ ଶାସନଗତ ସହଯୋଗ ଓ ଯୋଗସୂତ୍ର ପ୍ରତିଷ୍ଠିତ ହେବା ଏକମାତ୍ର ଉଚିତ ପନ୍ଥା ବୋଲି ଯେତେ ବୁଝାଇଲେ ବି ଫଳ ହେଲା ନାହିଁ । କିନ୍ତୁ କାଳର ଗତିକୁ ରୋକିବାର କ୍ଷମତା ରାଜାମାନଙ୍କ ହାତରେ ରହିଲା ନାହିଁ । ସ୍ୱାଧୀନତା ଆନ୍ଦୋଳନକୁ ପ୍ରତିରୋଧ କରିବା ପାଇଁ ଗଡ଼ଜାତର ଯେଉଁ ଆଦିବାସୀମାନଙ୍କୁ ମତାଇ ଦିଆଯାଉଥିଲା ସେହିମାନେ ଶେଷରେ ଅଣାୟତ୍ତ ହୋଇ ପଡ଼ିଲେ । ନୀଳଗିରିରେ ଗୋଟିଏ ଗୁରୁତର ପରିସ୍ଥିତି ଉପସ୍ଥିତ ହେଲା, ସେଠାର ଶାସନ ବିଲ୍‌କୁଲ୍ ଭୁଶୁଡ଼ି ପଡ଼ିଲା ଓ ଲୋକମାନେ ଆପଣା ଜୀବନ ଘେନି ରାଜ୍ୟ ଛାଡ଼ି ବାଲେଶ୍ୱରକୁ ପଳାଇ ଆସିଲେ । ଭାରତ ସରକାରଙ୍କ ନିର୍ଦ୍ଦେଶମତେ ଓଡ଼ିଶା ସରକାର ନୀଳଗିରିର ଶାସନ ଭାର ୧୯୪୭ ନଭେମ୍ବର ମାସରେ ହାତକୁ ନେଇନେଲେ ।

ଠିକ୍ ମାସକ ପରେ ମୟୂରଭଞ୍ଜକୁ ଛାଡ଼ି ଓଡ଼ିଶାର ୨୫ ଟି ଗଡ଼ଜାତ ରାଜ୍ୟ ଓଡ଼ିଶା ସହିତ ମିଶିଗଲେ । ବିଶାଳ ଉତ୍କଳ ଗଠିତ ହେଲା । ୧୯୪୯ ଜାନୁଆରି ପହିଲା ତାରିଖରେ ମୟୂରଭଞ୍ଜର ଶାସନ ଭାର ମଧ୍ୟ ଓଡ଼ିଶା ହାତକୁ ଆସିଲା ।

ଏହି ଅବସରରେ ମନେ ରଖିବାକୁ ହେବ ଯେ ଓଡ଼ିଆଭାଷାଭାଷୀ ବ୍ରିଟିଶ୍ ଶାସିତ ଅଞ୍ଚଳମାନଙ୍କୁ ଏକତ୍ର କରିବାପାଇଁ ଯେଉଁ ଉଦ୍ୟମ ଓ ଆନ୍ଦୋଳନ ଗତ ୪୦, ୫୦ ବର୍ଷ ଧରି ଓଡ଼ିଶାରେ ଚାଲିଥିଲା ତାହାଠାରୁ ଏହି ଗଡ଼ଜାତମିଶ୍ରଣ ଅଧିକ ବ୍ୟାପକ । ଗଡ଼ଜାତମିଶ୍ରଣ ମୂଳରେ ଶାସନ ସମ୍ବନ୍ଧୀୟ ଯୁକ୍ତି ଓ ବିଚାର ମୁଖ୍ୟ, ଅନ୍ୟ ସବୁ ଗୌଣ । ଉଦାହରଣସ୍ୱରୂପ ନୀଳଗିରି ବଙ୍ଗଳା ବା ମରାଠୀ ଭାଷାଭାଷୀ ଅଞ୍ଚଳ ହୋଇଥିଲେ ବି ତାହାର ଅବସ୍ଥିତି ଦୃଷ୍ଟିରୁ ଶାସନଭାର ଓଡ଼ିଶା ସରକାରଙ୍କୁ ନେବାକୁ ପଡ଼ିଥାନ୍ତା । ଯେଉଁ ଅଞ୍ଚଳର ଯେଉଁ ପ୍ରଦେଶ ସଙ୍ଗେ ମିଶିବା ଶାସନ ଶୃଙ୍ଖଳା ଦୃଷ୍ଟିରୁ ସୁବିଧାଜନକ ଓ ସମ୍ଭବପର ହେବ ସେହି ବିଚାରରେ ତାର ନିଷ୍ପତ୍ତି ହେବ—ଏପରି ଗୋଟିଏ ନୀତି କେବଳ ଓଡ଼ିଶାରେ ନୁହେଁ, ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟ ସମ୍ପର୍କରେ ମଧ୍ୟ ପ୍ରଯୁଜ୍ୟ ବୋଲି ଗୃହୀତ ହେଲା ।

ଡିସେମ୍ବର ୧୪ ତାରିଖର ଚୁକ୍ତି ଅନୁଯାୟୀ ୧୯୪୮ ପହିଲା ଜାନୁଆରିରେ ଓଡ଼ିଶାର ଦେଶୀୟ ରାଜ୍ୟ ଗୁଡ଼ିକର ଶାସନଭାର ବିଧିଗତ ଭାବରେ ଓଡ଼ିଶା ସରକାର

ଗ୍ରହଣ କରିବେ ବୋଲି ସ୍ଥିର ହୋଇଥିଲା । କିନ୍ତୁ ଷଡ଼େଇକଳା, ଖରସୁଆଁରେ ଆଦିବାସୀମାନଙ୍କ ମଧ୍ୟରେ ଘୋର ଉତ୍ତେଜନା ପ୍ରକାଶ ପାଇଲା । ଅବସ୍ଥା କ୍ରମେ ଜଟିଳ ହୋଇ ଆସିଲା ଓ ଭାରତସରକାରଙ୍କ ନିର୍ଦ୍ଦେଶ ଅନୁଯାୟୀ ଓଡ଼ିଶା ସରକାର ବାଲେଶ୍ୱର ଜିଲା ମାଜିଷ୍ଟ୍ରେଟଙ୍କୁ ପୁଲିସ ଫୌଜ ଦେଇ ତୁରନ୍ତ ସେଠାର ଅବସ୍ଥା ସମ୍ଭାଳିବାକୁ ପଠାଇଦେଲେ । ଏଥିରେ ବିହାର ସରକାର ଓ ସଡ଼େଇକଳା ରାଜା ପ୍ରତିବାଦ କଲେ । କିନ୍ତୁ ୧୯୪୭ ଡିସେମ୍ବର ୨୦ ତାରିଖରେ ଭାରତ ସରକାର ଗୋଟିଏ ତାରବାର୍ତ୍ତାରେ ଓଡ଼ିଶା ସରକାର ଓ ବିହାରସରକାରଙ୍କୁ ଜଣାଇ ଦେଲେ ଯେ ଏହି ଦୁଇଟି ରାଜ୍ୟର ଶାସନଭାର ବର୍ତ୍ତମାନ ପାଇଁ ଓଡ଼ିଶା ସରକାର ହାତକୁ ନେବେ ଓ ପରେ ସବୁ ଦିଗରୁ ସବୁ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରାଯାଇ ଶେଷ ନିଷ୍ପତ୍ତି କରାଯିବ । ଆଦିବାସୀଆନ୍ଦୋଳନକୁ ଦବାଇ ରଖିବା ପାଇଁ ବିହାର ସରକାରଙ୍କୁ ଭାରତସରକାର ନିର୍ଦ୍ଦେଶ ଦେଲେ ଓ ଆଦିବାସୀମାନେ ଯେପରି କୌଣସି ପ୍ରକାରେ ଉତ୍ତ୍ୟକ୍ତ ନ ହୁଅନ୍ତି ସେଥିପ୍ରତି ସତର୍କ ରହିବାକୁ ଆମ ସରକାରଙ୍କୁ ମଧ୍ୟ କୁହାଗଲା । ପହିଲା ଜାନୁଆରି ଦିନ ଭାରତସରକାର ପୁଣି ଜଣାଇଦେଲେ ଯେ ଏଇ ଦୁଇଟି ରାଜ୍ୟ ବିହାର ସହିତ ମିଶିବ କି ଓଡ଼ିଶା ସହିତ ମିଶିବ ଏ ବିଷୟରେ ବିଚାର କରିବାପାଇଁ ଗୋଟିଏ ଟ୍ରିବ୍ୟୁନାଲ ନିଯୁକ୍ତ ହେଉଛି ଓ ବର୍ତ୍ତମାନ ପାଇଁ ଏମାନଙ୍କର ଶାସନଭାର ଓଡ଼ିଶା ସରକାରଙ୍କଠାରେ ରହିବ । ବିହାର ସରକାର ଆପତ୍ତି କଲେ । ସେମାନେ କହିଲେ, ଶେଷନିଷ୍ପତ୍ତି ନ ହେବା ପାଏଁ ଏଇ ଦୁଇଟି ରାଜ୍ୟ କେନ୍ଦ୍ରସରକାରଙ୍କ ଅଧୀନରେ ରହନ୍ତୁ, ନଚେତ ଓଡ଼ିଶାସରକାରଙ୍କ ପ୍ରଚାର ଫଳରେ ଟ୍ରିବ୍ୟୁନାଲଙ୍କ ମତ ଉପରେ ଅଯଥା ପ୍ରଭାବ ବା ଚାପ ପଡ଼ିପାରେ । କେନ୍ଦ୍ର-ସରକାର ଏ ପ୍ରସ୍ତାବ ଗ୍ରହଣ କଲେ ନାହିଁ ଓ ଆମ ସରକାରଙ୍କୁ ଏ ସମ୍ପର୍କରେ ବିବାଦାତ୍ମକ ପ୍ରଚାରକାର୍ଯ୍ୟରୁ ନିବୃତ୍ତ ହେବାକୁ ନିର୍ଦ୍ଦେଶ ଦେଲେ । ଯେଉଁ ଅନୁସନ୍ଧାନ ଟ୍ରିବ୍ୟୁନାଲ ନିଯୁକ୍ତ ହେବ ତାହା ଷଡ଼େଇକଳା ଖରସୁଆଁ ସମେତ ସିଂହଭୂମ ଜିଲା ଉପରେ ଓଡ଼ିଶାର ଯେଉଁ ନ୍ୟାଯ୍ୟ ଦାବୀ ରହିଛି ତାହା ମଧ୍ୟ ବିଚାରକରୁ ବୋଲି ଓଡ଼ିଶା ସରକାର ଦାବୀ କଲେ । ଏ ସମ୍ପର୍କରେ ଗୋଟିଏ ଦୀର୍ଘ ସ୍ମାରକ ପତ୍ର ମଧ୍ୟ ଭାରତସରକାରଙ୍କ ପାଖକୁ ଦିଆଗଲା । ଜାନୁଆରି ମାସ ତୃତୀୟ ସପ୍ତାହରେ ଉତ୍ତର ଆସିଲା ଯେ ସିଂହଭୂମ ଜିଲା ସମ୍ବନ୍ଧରେ ବିଚାର କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲି ବା ଶାସନ-ବିଧାୟକ ସଭାରେ କରାଯିବ ଓ ବର୍ତ୍ତମାନପାଇଁ ଓଡ଼ିଶା ସରକାର ସିଂହଭୂମ କଥା ନ ଭାବି ଷଡ଼େଇକଳା ଓ ଖରସୁଆଁ ରାଜ୍ୟ ଶାସନରେ ମନୋନିବେଶ କରନ୍ତୁ । ଷଡ଼େଇକଳା ରାଜାଙ୍କର ମତିଗତି ସେତେବେଳକୁ ସ୍ପଷ୍ଟ ହୋଇଗଲାଣି । ଓଡ଼ିଶା ସରକାରଙ୍କୁ ସାହାଯ୍ୟ ଦେବା ପରିବର୍ତ୍ତେ ମିଶ୍ରଣବିରୋଧୀ ଆନ୍ଦୋଳନରେ ତାଙ୍କର

ସେ ପୂର୍ଣ୍ଣ ସମର୍ଥନ ଥିଲା ତାହା ଆଜ ଜାଣିବାକୁ ବାକି ନ ଥିଲା । ୧୯୪୮ ଜାନୁଆରୀ ପଶ୍ବଲ୍ଦନ ଧନୁଶର ଧରି ହଜାର ହଜାର ଆଦିବାସୀ ବାହାରି ପଡ଼ିଲେ । ଜାମସେଦପୁରରୁ ଆଦିବାସୀମାନେ ଆସି ସ୍ଥାନୀୟ ଆଦିବାସୀମାନଙ୍କୁ ମତାଇଲେ ଓ ରାଜ ଖରସୁଆଁରେ ପୁଲିସ ଫଉଜଉପରେ ଆକ୍ରମଣ କରାଗଲା । ପୋଲିସକୁ ଗୁଳିଫୁଟ୍ କରିବାକୁ ପଡ଼ିଲା ଯାହାଫଳରେ ଅନେକ ଆଦିବାସୀ ପ୍ରାଣ ହରାଇଲେ । ଗୁଳିକାଣ୍ଡ ବିଷୟରେ ଗୋଟିଏ ତଦନ୍ତ କରାଯିବା ପାଇଁ ଷଡ଼େଇକଳାରାଜାଙ୍କ ଦଳ ଓ ଜୟପାଳସିଂହଙ୍କ ଦଳ ତରଫରୁ ଦାବୀ କରାଗଲା, କିନ୍ତୁ ଭାରତସରକାର ତାହା ଶୁଣିଲେ ନାହିଁ । ଶାସନବିଧାୟକ ସଭାରେ ଶ୍ରୀ ଜୟପାଳ ସିଂହ ଏ ସମ୍ପର୍କରେ ଗୋଟିଏ କାଟପ୍ରସ୍ତାବ ଆଣି ସ୍ୱର୍ଗୀୟ ସର୍ଦ୍ଦାର ପଟେଲଙ୍କଠାରୁ ଯେଉଁ ଉତ୍ତର ପାଇଥିଲେ ତାହା ଉଲ୍ଲେଖଯୋଗ୍ୟ । ଓଡ଼ିଶା ସରକାରଙ୍କ କାର୍ଯ୍ୟକୁ ଭାରତ ସରକାର ସମର୍ଥନ କଲେ ।

ତା' ପରେ ୧୯୪୮ ଫେବୃଆରୀ ମାସରେ ଷଡ଼େଇକଳା ଓ ଖରସୁଆଁର ଭବିଷ୍ୟତ ନିର୍ଣ୍ଣୟ କରିବାପାଇଁ ଭାରତସରକାର ତତ୍‌କାଳୀନ ବମ୍ବେ ହାଇକୋର୍ଟର ବିଚାରପତି ଶ୍ରୀଯୁକ୍ତ ବାଜଦେକରଙ୍କୁ ନିଯୁକ୍ତ କଲେ । ଏହି ଘୋଷଣା ପ୍ରକାଶ ପାଇବା ପରେ ପରେ ଷଡ଼େଇକଳାର ପଞ୍ଚାୟତ ନିଜର ଅନୁଚର-ବର୍ଗଙ୍କ ସହିତ ଓଡ଼ିଶା ସରକାରଙ୍କ କର୍ମଚାରୀଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଦେଲେ । ଶ୍ରୀ ଭୂପେନ୍ଦ୍ର ନାରାୟଣ ସିଂହ ଦେଓ ଯେଉଁ 'ପ୍ରଜା ସମିତି' ପ୍ରଜାମଣ୍ଡଳ ବିରୁଦ୍ଧରେ ଛିଡ଼ା କରାଇଥିଲେ ବର୍ତ୍ତମାନ ସେହି ପ୍ରଜାସମିତିକୁ ମତାଇ ଦିଆଗଲା । ତାଙ୍କ ରାଜ୍ୟରେ ତାଙ୍କର ଆଇନସଭା ରହିବ—ଲୋକମାନେ ତାଙ୍କର ଆଇନ ପ୍ରଣୟନ କରିପାରିବେ; ଓଡ଼ିଶା ସଙ୍ଗେ ଜୋର ଜବରଦସ୍ତି ମିଶାଇ ଦିଆଗଲା ବୋଲି ସେ ଷଡ଼େଇକଳାର ସ୍ୱାତନ୍ତ୍ର୍ୟ ଲୋପ ପାଇଗଲା ବା ସେଠି ସେମାନଙ୍କର ସ୍ୱତନ୍ତ୍ର ଶାସନ ରହିବ ନାହିଁ ଏହା କେବେ ବରଦାସ୍ତ କରାଯାଇ ନ ପାରେ । ଅତଏବ ଶାସନ କାର୍ଯ୍ୟରେ ନାନା ପ୍ରକାର ବାଧାବିଘ୍ନ ସୃଷ୍ଟି କରାଗଲା । ଓଡ଼ିଆ କର୍ମଚାରୀମାନଙ୍କୁ ବାଛନ୍ଦ କରାଗଲା—ତାଙ୍କୁ କେହି ଘରଭଡ଼ା ଦେଲେ ନାହିଁ ବାରିକ, ଧୋବା ତାଙ୍କ କାମ କଲେ ନାହିଁ । କେତେକ ଜାଗାରେ ପ୍ରଜାସମିତି-ଲୋକେ ସମାନ୍ତରାଳ ଶାସନ ପ୍ରତିଷ୍ଠା କଲେ । ଚଲକାନରେ ଆଦିବାସୀମାନେ ଏହିପରି ଗୋଟାଏ ସମାନ୍ତରାଳ ଶାସନ ଚାଲୁ କରିଦେଇ, ମକଦ୍ଦମା ବିଚାର କରିବା, ଗିରଫ କରିବା, ଜେଲଦେବା ପ୍ରଭୃତି କାର୍ଯ୍ୟମାନ ଆରମ୍ଭ କରିଦେଲେ । ଅବସ୍ଥା କ୍ରମେ ଅଧିକ ଗୁରୁତର ଆକାର ଧାରଣ କଲା । ୧୯୪୮ ଏପ୍ରେଲ ୨୩ ତାରିଖରେ ଓଡ଼ିଆ କର୍ମଚାରୀଙ୍କୁ ହତ୍ୟା କରିବାପାଇଁ

ଗୋଟାଏ ଗୁପ୍ତ-ଷଡ଼ଯନ୍ତ୍ର ସୌଭାଗ୍ୟକ୍ରମେ ଧରାପଡ଼ିଗଲା । ଏହି ପରିସ୍ଥିତିର ସୁବିଧା ନେଇ ପୂର୍ବାଞ୍ଚଳ ଗଡ଼ଜାତ ରାଜନ ଅନ ଯାହା ଭାରତସରକାରଙ୍କ ଧମକରେ କିଛିକାଳ ଦବି ଯାଇଥିଲା ତାହା ମଧ୍ୟ ମୁଣ୍ଡ ଟେକି ଉଠିଲା । ଭାରତସରକାରଙ୍କୁ କୁହାଗଲା ଯେ ଏ ଗଣ୍ଡଗୋଳର କାରଣ ଲୋକେ ଓଡ଼ିଶାସରକାରଙ୍କ ଶାସନାଧୀନ ହେବାକୁ ଚାହାନ୍ତି ନାହିଁ, ବିହାରକୁ କୁହାଗଲା ତାଙ୍କ ସହିତ ମିଶିବା ପାଇଁ ସରେଇକଳା ଖରସୁଆଁବାସୀ ବ୍ୟାକୁଳ । ଜୟପାଲ ସିଂହକୁ କୁହାଗଲା ଝାଡ଼ଖଣ୍ଡ । ବିହାର ଓ ଓଡ଼ିଶା ଭିତରେ ଗୋଟାଏ ମନୋମାଳିନ୍ୟ ସୃଷ୍ଟି କରିଦେଇ ଓ ଭାରତସରକାରଙ୍କୁ ଗୋଟାଏ ଧୂଆଁବାଣ ମାରି ମଝିରେ ରାଜନ ଅନ ପାଇଁ ପୁଣି ଓଡ଼ିଶାସାରା ଜୋର-ସୋରରେ ଆନ୍ଦୋଳନ ଆରମ୍ଭ କରାଗଲା । ଏହି ଦୁଇଟି ରାଜ୍ୟରେ ଏପରି ଗୋଟିଏ ଅବସ୍ଥା ସୃଷ୍ଟି ହେଲା ଯେ ମିଲିଟାରି ପୁଲିସ ସାହାଯ୍ୟରେ ଶାସନ ଚଳାଇବାକୁ ହେଲା । ପ୍ରସ୍ତାବିତ ଟ୍ରିବ୍ୟୁନାଲ ଏ ପର୍ଯ୍ୟନ୍ତ ନିଯୁକ୍ତ ହୋଇ ପାରିଲା ନାହିଁ; କାରଣ ଶ୍ରୀଯୁକ୍ତ ବାଉଦେକରଙ୍କୁ ବମ୍ବେ ସରକାର ସେତେବେଳେ ଛାଡ଼ିପାରିଲେ ନାହିଁ । ଏହି ପରିସ୍ଥିତିର ସମ୍ମୁଖୀନ ହୋଇ ଭାରତସରକାର ନିଷ୍ପତ୍ତିଭାର ନିଜ ହାତକୁ ନେଲେ ଏବଂ ୧୯୪୮ ମେ ମାସ ୧୭ ତାରିଖରେ ଘୋଷଣା କଲେ ଯେ ସିଂହଭୂମ ଜିଲ୍ଲାର ଶାସନଭାର ଯେଉଁ ସରକାର ବହନ କରିବେ କେବଳ ସେହି ସରକାରଙ୍କ ପକ୍ଷରେ ସରେଇକଳା-ଖରସୁଆଁ ରାଜ୍ୟଭାର ଗ୍ରହଣ କରିବା ସମ୍ଭବ । ଅତଏବ ସେହି ତାରିଖରୁ ଏହି ଦୁଇଟି ଗଡ଼ଜାତ ରାଜ୍ୟର ଶାସନଭାର ବିହାରସରକାରଙ୍କ ହସ୍ତରେ ନ୍ୟସ୍ତ କରାଗଲା । ଓଡ଼ିଶା ଭିତରେ ଗଡ଼ଜାତ ରାଜାମାନେ ପୁନଃଅନ ଆନ୍ଦୋଳନ ଚଳାଇବା ପାଇଁ ସରେଇକଳାକୁ ଘାଟିରୂପେ ଯେପରି ବ୍ୟବହାର ନ କରନ୍ତି ସେଥିପ୍ରତି ସତର୍କ ରହିବା ପାଇଁ ବିହାରସରକାରଙ୍କୁ ନିର୍ଦ୍ଦେଶ ଦିଆଗଲା । ଏହି ରାଜ୍ୟ ଦୋଟିକ ଓଡ଼ିଶାକୁ ଆଉ ଫେରିନାହିଁ ।

## ( ଦୁଇ )

୧୯୩୯ ରେ ମହତାବ କମିଟି ଯେଉଁଦିନ୍ତୁ ଗଡ଼ଜାତରାଜାମାନଙ୍କର ସନନ୍ଦ ଉଠାଇ ଦେଇ ସେମାନଙ୍କୁ ଆଳୀ କନିକା ଭଳି ଜମିଦାରିରେ ପରିଣତ କରିବାପାଇଁ ମତ ଦେଲା ସେହିଦିନଠାରୁ ଶ୍ରୀ ମହତାବ ରାଜାମହାରାଜାମାନଙ୍କର ପ୍ରଧାନ ଶତ୍ରୁ ବୋଲି ବିବେଚିତ ହେଲେ । କଳାହାଣ୍ଡି ମହାରାଜାଙ୍କଠାରୁ ତାଙ୍କୁ ପର୍ଶୁରାମ ଆଖ୍ୟା ମଧ୍ୟ ମିଳିଥିଲା । ତାପରେ କାବିନେଟ୍ ମିଶନ ଆଗରେ ଏହି ମିଶ୍ରଣ ସଂପର୍କରେ ଯେଉଁ ଯୁକ୍ତି ଉପସ୍ଥାପିତ କରାଗଲା ଓ ତା ଫଳରେ ସାର ଷ୍ଟାଫୋର୍ଡ କ୍ରିପସ ଓ ତତ୍କାଳୀନ ଭାଇସରୟ ଲର୍ଡ ଓ୍ୱାଭେଲଙ୍କଠାରୁ ଯେଉଁ ଉତ୍ସାହର ସୂଚନା

ମିଳନ ତାହା ରାଜନ୍ୟମଣ୍ଡଳୀରେ ଉଦ୍‌ବେଗର କାରଣ ହେଲା । ୧୯୪୭ ଜୁନ ୩୦ ତାରିଖରେ ପାଟଣା ମହାରାଜା ଭାଇସରୟଙ୍କ ପାଖକୁ ଲେଖିଲେ

"Your Excellency is not unaware of the fact that for some years past the attitude of the Provincial Government of Orissa had not been friendly towards the Orissa States. The suggestion put forward by the Premier of Orissa for the amalgamation of the Orissa States with the Province and the distortion of history in the memorandum prepared by the Orissa Provincial Congress Committee in support of the plea of amalgamation of the States as also the statements of Provincial leaders and the attitude of the local Provincial Press had naturally caused suspicion and resentment in the minds of the Rulers. The letter of the Premier of Orissa to the Rulers of Orissa States had, however, by suggesting that co-operation of the States was sought instead of amalgamation made us inclined to agree to have further discussions with Provincial representatives."

"ଗତ କେତେ ବର୍ଷ ହେଲା ଓଡ଼ିଶା ଦେଶୀୟରାଜ୍ୟମାନଙ୍କ ପ୍ରତି ଓଡ଼ିଶା ପ୍ରାଦେଶିକ ସରକାରଙ୍କ ମତିଗତି ଯେ ବନ୍ଧୁଭାବାପନ୍ନ ନୁହେ ଏହା ମହାମାନ୍ୟ ବଡ଼ଲାଟଙ୍କୁ ଅଜଣା ନ ଥିବ । ଓଡ଼ିଶାପ୍ରଦେଶସହ ଏହିସବୁ ଦେଶୀୟରାଜ୍ୟକୁ ମିଶାଇ ଦେବାପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଯେଉଁ ପ୍ରସ୍ତାବ ଦେଇଛନ୍ତି, ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଏହି ମିଶ୍ରଣକୁ ସମର୍ଥନ କରି ସ୍ମାରକପତ୍ରରେ ଇତିହାସକୁ ଯେଭଳି ବିକୃତ କରିଛନ୍ତି, ଓଡ଼ିଶା ପ୍ରଦେଶର ନେତାମାନେ ଯେଉଁସବୁ ବିବୃତି ପ୍ରକାଶ କରିଛନ୍ତି ଏବଂ ଓଡ଼ିଶା ପ୍ରଦେଶର ସଂବାଦପତ୍ରମାନେ ଯେଭଳି ମତ ପ୍ରକାଶ କରୁଛନ୍ତି ସେ ସବୁ ଫଳରେ ଓଡ଼ିଶା ଦେଶୀୟ ରାଜ୍ୟର ଶାସକମାନଙ୍କ ମନରେ ସନ୍ଦେହ ଓ କ୍ରୋଧ ଜାତ ହୋଇଥିଲା । କିନ୍ତୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓଡ଼ିଶା ଦେଶୀୟ-ରାଜ୍ୟର ଶାସକମାନଙ୍କୁ ଖଣ୍ଡିଏ ପତ୍ର ଲେଖି ପ୍ରସ୍ତାବ ଦେଇଥିଲେ ଯେ ମିଶ୍ରଣ ପରିବର୍ତ୍ତେ ଦେଶୀୟ ରାଜ୍ୟମାନଙ୍କର ସହଯୋଗ ଲୋଡ଼ା ଯାଉଛି । ତହୁଁ ପ୍ରାଦେଶିକ ସରକାରଙ୍କ ପ୍ରତିନିଧିମାନଙ୍କ ସଙ୍ଗେ ପୁଣି ଆଲୋଚନା କରିବାପାଇଁ ଆମେ ରାଜି ହେଲୁଁ ।"

"In the absence of any common meeting ground the inconsistency of the Orissa Premier and radical difference

of approach to the question, any meeting now is likely to create further misunderstanding and greater embitterment of feelings. We confidently hope that the Rulers of Orissa States will not be deprived of the sympathy and support of the Political Department at this stage........."

"ଦୁଇପକ୍ଷ ମଧ୍ୟରେ ମତର ସାମଞ୍ଜସ୍ୟ ନ ଥିବା ସ୍ଥଳେ, ଓଡ଼ିଶା ପ୍ରଧାନମନ୍ତ୍ରୀଙ୍କ ଘନଘନ ମତପରିବର୍ତ୍ତନ ଓ ଯେଉଁ ଦୃଷ୍ଟିଭଙ୍ଗୀରୁ ବିଷୟଟି ବିଚାର କରାଯାଉଛି ସେଥିରେ ଦୁଇପକ୍ଷ ମଧ୍ୟରେ ଯେ ଏକ ମୌଳିକ ପାର୍ଥକ୍ୟ ରହିଛି ସେସବୁ ଦୃଷ୍ଟିରୁ ବର୍ତ୍ତମାନ ଦେଖାସାକ୍ଷାତଫଳରେ ଅଧିକ ମତଭେଦ ଓ ତିକ୍ତତା ସୃଷ୍ଟି ହେବାର ଆଶଙ୍କା । ଆମ୍ଭମାନଙ୍କର ଦୃଢ଼ ଆଶା ଯେ ଏତେବେଳେ ପଲିଟିକାଲ ଡିପାର୍ଟମେଣ୍ଟ ଆମ୍ଭମାନଙ୍କୁ ତାଙ୍କର ସହାନୁଭୂତି ଓ ସାହାଯ୍ୟରୁ ବଞ୍ଚିତ କରିବେ ନାହିଁ ।"

ତାପରେ ୧୯୪୭ ମସିହା ୩୦ ତାରିଖ ଜୁଲାଇରେ ସେରାଇକଲା ରାଜାସାହେବ ଯେଉଁ ଗବେଷଣାମୂଳକ ସ୍ମାରକପତ୍ର ତତ୍କାଳୀନ ରେସିଡେଣ୍ଟ କର୍ଣ୍ଣେଲ୍ ହର୍ନ୍‌କୁ ଦେଇଥିଲେ ସେଥିରେ ସେ ଲେଖିଥିଲେ :—

"The Orissa Province has big rivers, waterfalls, lakes and other natural resources and a great extent of sea coast. Inspite of these, Orissa Province is poor for the fact that Orissa has neglected to utilise and improve its resources Orissa has not produced a man of vision and capacity who can tackle these problems and has not produced a leader of All-India reputation. The petty party jealousy and narrow views of Orissa leaders have marred their progress and added to the misery of the Orissa people. Hunger, pestilence, disease have been constant companions of the British Orissa........."

ଓଡ଼ିଶା ପ୍ରଦେଶରେ ବଡ଼ ବଡ଼ ନଦୀ, ଜଳପ୍ରପାତ, ହ୍ରଦ ଓ ପ୍ରାକୃତିକ ସଂପଦ ପୂରିରହିଛି । ଓଡ଼ିଶାର ବିସ୍ତୀର୍ଣ୍ଣ ସମୁଦ୍ରୋପକୂଳ ରହିଛି । କିନ୍ତୁ ଏସବୁ ଥାଇ ମଧ୍ୟ ଓଡ଼ିଶା ପ୍ରଦେଶ ଦରିଦ୍ର । ତାର କାରଣ ଓଡ଼ିଶା ତାର ଏହି ବିଭବକୁ ବିନିଯୋଗ ଓ ବିକାଶ କରିବାରେ ଅବହେଳା କରିଛି । ଏସବୁ ସମସ୍ୟାର ସମାଧାନ କରି-ପାରିବାଭଳି ଜଣେ ହେଲେ ଯୋଗ୍ୟ ଓ ଦୂରଦର୍ଶୀ ଲୋକ ଓଡ଼ିଶାରେ ଏ ପର୍ଯ୍ୟନ୍ତ

ବାହାର ନାହିଁ । ସମଗ୍ର ଭାରତରେ ଖ୍ୟାତି ଲାଭ କରିଥିବା ଭଳି ଜଣେ ନେତା ମଧ୍ୟ ଓଡ଼ିଶାରେ ନାହାନ୍ତି । ଓଡ଼ିଶା ନେତାମାନଙ୍କ ମଧ୍ୟରେ ଯେଉଁ କ୍ଷୁଦ୍ର ଦଳଗତ ଈର୍ଷା ଓ ଓ ସଂକୀର୍ଣ୍ଣତା ରହିଛି ତାହାଫଳରେ ଓଡ଼ିଶାର ବିକାଶ ହୋଇପାରୁ ନାହିଁ ଓ ଓଡ଼ିଶା ଲୋକଙ୍କ ଦୁଃଖଦୈନ୍ୟ ବଢ଼ୁଛି । ଅନାହାର, ରୋଗ ଓ ମହାମାରୀ ଖାସ ଓଡ଼ିଶାର ଚିରସହଚର ।"

ସେ ଆହୁରି ମଧ୍ୟ ଲେଖିଥିଲେ :—

"Similarly Singhbhum with its rulers of Purohat and Sareikella was never within Orissa, but was a part of Bihar. It was never conquered by the Moghuls and the Pathans, or the Marhattas nor was it ever under any king of Orissa. Their connection begins with the British direct and not through any intermediary and they used to exercise sovereign powers pertaining to an independent ruler and the British have by their engagement with Purohat in 1918 recognized it as feudatory. As regards Sareikella it received the assurance from the Supreme head of Government, Lord Wellesley, Lord Minto and others that its ruler would be maintained in his possession and power and would enjoy exemption from paying any peshkish. Kharswan though under Sareikella was recognized separately in 1825. Their political connection with the British began through Midnapur, then placed under the Agent, North Eastern Provinces upto 1834, when the post of A.G.G. was abolished and converted to the Commissionership of Chhotanagpur. Thus the State Sareikella along with that of Bamra, Gangpur and others, viz. Surguja, Korea, Jashpur, Udaipur etc, remains in political relation with the Government of Bengal upto the creation of the Bihar Province in 1922. How, Mr. Mahatab claims these States as belonging to Orissa historically or geographically, one cannot comprehend at all."

"ସେହିଭଳି ପୋଡ଼ାହାଟ ଓ ଷଡ଼େଇକଳାର ରାଜାଙ୍କ ସମେତ ସିଂହଭୂମି କେବେ ଓଡ଼ିଶାରେ ନ ଥିଲା । ଏହା ବିହାରର ଗୋଟିଏ ଅଂଶ । ମୋଗଲ ପଠାଣ ବା ମରହଟ୍ଟା କେହି ଏହାକୁ କେବେ ଜୟ କରି ନ ଥିଲେ କିମ୍ବା ଏହା କେବେହେଲେ କୌଣସି ଓଡ଼ିଶା ରାଜାଙ୍କ ଅଧୀନରେ ନ ଥିଲା । ସେମାନେ ଇଂରେଜଙ୍କ ସହିତ ସିଧାସଳଖ ସମ୍ପର୍କ ପ୍ରତିଷ୍ଠା କରିଥିଲେ । ଅନ୍ୟ କାହା ଜରିଆରେ ସେମାନେ ଏହା କରି ନ ଥିଲେ । ଜଣେ ସ୍ୱାଧୀନ ଶାସକ ଯେଉଁ ସାର୍ବଭୌମ କ୍ଷମତା ଉପଭୋଗ କରେ ସେମାନେ ତାହା ଉପଭୋଗ କରୁଥିଲେ ଏବଂ ଇଂରେଜମାନେ ପୋଡ଼ାହାଟ ସଙ୍ଗେ ୧୯୧୮ ରେ ଯେଉଁ ଚୁକ୍ତି କରିଥିଲେ ସେଥିରେ ସେମାନେ ଏହାକୁ "ଫିଉଡେଟରି" ରାଜ୍ୟବୋଲି ସ୍ୱୀକାର କରିଥିଲେ । ଷଡ଼େଇକଳା ସେହିଭଳି ଲର୍ଡ଼ ବେଲେସଲି ଓ ଲର୍ଡ଼ ମିଣ୍ଟୋଙ୍କ ପରି ସରକାରର ସର୍ବୋଚ୍ଚ ମୁଖ୍ୟଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ପାଇଥିଲା ଯେ ଷଡ଼େଇକଳାର ଶାସକଙ୍କ ଆସନ ଓ କ୍ଷମତା ଅକ୍ଷୁର୍ଣ୍ଣ ରଖାଯିବ ଓ ତାଙ୍କୁ କୌଣସି ପେସ୍‌କସ୍ ଦେବାକୁ ପଡ଼ିବ ନାହିଁ । ଖରସୁଆଁ ଷଡ଼େଇକଳା ଅଧୀନରେ ଥିଲେ ମଧ୍ୟ ୧୮୨୫ ରେ ଏହା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ବୋଲି ସ୍ୱୀକୃତ ହୋଇଥିଲା । ଇଂରେଜମାନଙ୍କ ସହ ଏମାନଙ୍କ ସମ୍ପର୍କ ମେଦିନୀପୁର ଜରିଆରେ ସ୍ଥାପିତ ହୋଇଥିଲା । ମେଦିନୀପୁର ସେତେବେଳେ ନର୍ଥ ଇଷ୍ଟର୍ଣ୍ଣ ପ୍ରଭିନ୍‌ସେସର ଏଜେଣ୍ଟଙ୍କ ଅଧୀନରେ ରଖା ଯାଇଥାଏ । ୧୯୩୪ ପର୍ଯ୍ୟନ୍ତ ଏହା ଚାଲିଥିଲା । ତହୁଁ ଏ.ଜି.ଜି ପଦ ଉଠାଇ ଦିଆଗଲା ଏବଂ ଏହା ବଦଳରେ ଛୋଟ ନାଗପୁରର କମିସନର ପଦ ସୃଷ୍ଟି ହେଲା । ଏହି ଭାବରେ ଷଡ଼େଇକଳା ରାଜ୍ୟ ବାମଣ୍ଡା, ଗାଙ୍ଗପୁର, ସୁରୁଗୁଜା, କୋରିଆ, ଯାସପୁର, ଉଦୟପୁର ଇତ୍ୟାଦି ଅନ୍ୟ ରାଜ୍ୟମାନଙ୍କ ସହ ୧୯୧୨ ରେ ସ୍ୱତନ୍ତ୍ର ବିହାର ପ୍ରଦେଶ ଗଠନ ପର୍ଯ୍ୟନ୍ତ ବଙ୍ଗସରକାରଙ୍କ ସହ ରାଜନୈତିକ ସମ୍ପର୍କ ରଖି ଆସିଥିଲା । ଶ୍ରୀଯୁକ୍ତ ମହତାବ ଐତିହାସିକ କିମ୍ବା ଭୌଗୋଳିକ ଦୃଷ୍ଟିରୁ କି ଭଳି ଏ ରାଜ୍ୟଗୁଡ଼ିକ ଓଡ଼ିଶାର ବୋଲି ଦାବୀ କରୁଛନ୍ତି ମୋତେ ବୁଝି ହେଉନାହିଁ ।"

ପୁଣି

"The separation of States from the clutches of Provincial control by the creation of a Political Agent in 1905 and then by the creation of an A.G.G under the direct control of the Crown Representative has been a godsent boon to the Eastern States........"

"୧୯୦୫ ମସିହାରେ ଗୋଟିଏ ପଲିଟିକାଲ ଏଜେଣ୍ଟ ପଦ ସୃଷ୍ଟି କରି ପ୍ରାଦେଶିକ ସରକାରଙ୍କ କର୍ତ୍ତୃତ୍ୱରୁ ଏହି ସବୁ ଦେଶୀୟ ରାଜ୍ୟଗୁଡ଼ିକୁ ଯେ ଭଳି ମୁକ୍ତ

କିଅଗଲା ଓ ପରେ ଖୋଦ ବ୍ରିଟିଶ ସମ୍ରାଟଙ୍କ ପ୍ରତିନିଧିଙ୍କ ଅଧୀନରେ ଜଣେ ଏ.ଜି.ଜି ନିଯୁକ୍ତ କରି ଏହା ଯେପରି ରଖାଗଲା ତାହା ଏହି ସବୁ ପୂର୍ବ ଗଡ଼ଜାତ ପକ୍ଷରେ ଭଗବାନଙ୍କ ଆଶୀର୍ବାଦ ବୋଲି ମନେ ହେଉଛି ।”

ପୁଣି

"The Congress of Orissa has been jealous of this progress and is casting a covetuous eye on the resources of these States in order to enrich the Province quickly. With this selfish motive they created agitation in these States in 1838 and 1942 when the Rulers of the States were compelled to arrest the Congress leaders at the bidding of the Government."

"ଓଡ଼ିଶା କଂଗ୍ରେସ ଏହି ଉନ୍ନତି ସହି ପାରିଲେ ନାହିଁ । ସେମାନେ ଏହି ସବୁ ଦେଶୀୟ ରାଜ୍ୟର ବିଭବ ସାହାଯ୍ୟରେ ପ୍ରଦେଶକୁ ଶୀଘ୍ର ଧନଶାଳୀ କରିବେ ବୋଲି ଏ ଆଡ଼କୁ ଲୋଲୁପ ଦୃଷ୍ଟି ପକାଉଛନ୍ତି । ଏହି ସ୍ୱାର୍ଥ ନେଇ ସେମାନେ ଦେଶୀୟ-ରାଜ୍ୟମାନଙ୍କରେ ୧୯୩୮ ଓ ୧୯୪୨ ରେ ଆନ୍ଦୋଳନ କରାଇଲେ । ତହିଁ ସରକାରଙ୍କ ନିର୍ଦ୍ଦେଶରେ ଦେଶୀୟ ରାଜ୍ୟର ରାଜାମାନେ କଂଗ୍ରେସ ନେତାମାନଙ୍କୁ ଗିରଫ କରିବାକୁ ବାଧ୍ୟ ହେଲେ ।"

ଶେଷରେ

"To hand over States to such unscrupulous people of narrow-minded vision and low capacity will be a most treacherous and unjustified act and a gross exploitation of the true interest of the States—the Rulers and the people of States. Such an attempt should be resisted by all means and power and at any cost."

"ଏଭଳି ମତିହୀନ, ସଂକୀର୍ଣ୍ଣମନା ଓ ଅଯୋଗ୍ୟ ଲୋକଙ୍କ ହାତରେ ଗଡ଼ଜାତଗୁଡ଼ିକୁ ସମର୍ପିଦେବା ଗୋଟିଏ ଅତି ଅନ୍ୟାୟ ଓ ବିଶ୍ୱାସଘାତକ କାର୍ଯ୍ୟ ହେବ । ଏହାଦ୍ୱାରା ଗଡ଼ଜାତର ରାଜା ଓ ପ୍ରଜା ଉଭୟଙ୍କ ସ୍ୱାର୍ଥରେ ଜଳାଞ୍ଜଳି ଦିଆଯିବ । ଏଭଳି ଉଦ୍ୟମକୁ ସବୁମତେ ପଣ୍ଡ କରିବା ପାଇଁ ଚେଷ୍ଟା ହେବା ଉଚିତ ।"

କିନ୍ତୁ ଏଥିରେ ଆଦୌ ବିଚଳିତ ନ ହୋଇ ଶ୍ରୀଯୁକ୍ତ ମହତାବ ଭାବିଲେ ଯେ ରାଜାମାନେ ହୁଏତ ତାଙ୍କ ପ୍ରସ୍ତାବ ଭଲରୂପେ ବୁଝି ପାରିନାହାନ୍ତି । ଖୋଲାଖୋଲି

ଶବରେ ସବୁ କଥାଟାକୁ ଆଲୋଚନା କରିବା ପାଇଁ ଆଗ୍ରହ ପ୍ରକାଶକର ରାଜା-ମାନଙ୍କୁ ସେ ଯେଉଁ ପତ୍ର ଦେଇଥିଲେ ସେଥିରେ ସେ ଲେଖିଥିଲେ

"What I mean is this that for the interest of both the States and the Province there should be some sort of co-ordination without which it is clear to me neither the States nor the Province can prosper in the present circumstances."

"ମୋର ଉଦ୍ଦେଶ୍ୟ ହେଉଛି ପ୍ରଦେଶ ଓ ଗଡ଼ଜାତମାନଙ୍କମଧ୍ୟରେ ଉଭୟଙ୍କ ସ୍ୱାର୍ଥ ଦୃଷ୍ଟିରୁ ଗୋଟିଏ ପ୍ରକାର ସମନ୍ୱୟ ରହୁ । ଏହା ନହେଲେ ବର୍ତ୍ତମାନ ଅବସ୍ଥାରେ ପ୍ରଦେଶ ବା ଗଡ଼ଜାତ କାହାରି ଉନ୍ନତି ହୋଇ ପାରିବ ନାହିଁ ।"

"The combination of the States with the Province will mean for the States giving away some of their sovereign rights for the common cause. Also for the Provicce it means that its Government will give away some of its rights for the common cause. It is by no means a one-sided bargain."

"ପ୍ରଦେଶ ସହ ମିଶିଲେ ସାଧାରଣ ସ୍ୱାର୍ଥ ପାଇଁ ଗଡ଼ଜାତମାନଙ୍କୁ ତାଙ୍କର କେତେକ ସାର୍ବଭୌମ କ୍ଷମତା ଛାଡ଼ିବାକୁ ପଡ଼ିବ । ସେହିପରି ପ୍ରଦେଶକୁ ମଧ୍ୟ ସାଧାରଣ ସ୍ୱାର୍ଥ ଲାଗି କେତେକ ଅଧିକାର ଛାଡ଼ିବାକୁ ହେବ । ଏହା କେବେହେଁ ଏକତରଫା କାରବାର ନୁହେ ।"

ଶେଷରେ

"If I am given an opportunity to meet all the Rulers together to explain my point of view, I am almost sure that I will carry conviction to each one of them and I think I can stand any amount of cross-examination on the issue that I have raised. I shall be very much obliged if you kindly point out to me any legitimate apprehension in combining with the Province in a common administration so that I may try my level best to remove it. Whatever be the terms of amalgamation, let us first of all decide upon the principle......My humble request is that without hearing

me personally no opinion may be formed about my proposal or no suspicion be entertained about my conduct.''

''ସବୁ ରାଜାମାନଙ୍କୁ ଏକତ୍ର ସାକ୍ଷାତ କରି ମୋର କଥାଟା ବୁଝାଇବାକୁ ଯଦି ମୋତେ ସୁଯୋଗ ମିଳନ୍ତା, ମୋର ଦୃଢ଼ ବିଶ୍ୱାସ ଯେ ମୋ କଥାରେ ମୁଁ ସେମାନଙ୍କର ହୃଦ୍‌ବୋଧ କରାଇ ଦେଇ ପାରନ୍ତି ଏବଂ ଏ ସମ୍ପର୍କରେ ମୋତେ ଯେତେ ଜେରା କଲେ ବି ମୁଁ ତାର ଯଥାଯଥ ଉତ୍ତର ଦେଇ ପାରନ୍ତି । ଗୋଟିଏ ଶାସନାଧୀନରେ ପ୍ରଦେଶ ଓ ଗଡ଼ଜାତ ଉଭୟ ରହିଲେ କି ଅସୁବିଧା ହେବ ବୋଲି ଆଶଙ୍କା କରାଯାଉଛି ତାହା ଯଦି ଆପଣ ମୋତେ କୃପାକରି ଦର୍ଶାଇ ଦିଅନ୍ତେ ତେବେ ତାହା ଦୂର କରିବା ପାଇଁ ମୁଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରନ୍ତି । ମିଶ୍ରଣର ସର୍ତ୍ତ ଯାହା ହେଉ ପଛକେ, ପ୍ରଥମେ ଆସନ୍ତୁ ମୀମାଂସା ସ୍ଥିର କରି ଦେବା । ମୋର ବିନୀତ ଅନୁରୋଧ ଯେ ବ୍ୟକ୍ତିଗତ ଭାବରେ ମୋ କଥା ନ ଶୁଣି ମୋ ପ୍ରସ୍ତାବ ସମ୍ପର୍କରେ କୌଣସି ମତ ଗଠିତ ନ ହେଉ କିମ୍ବା ମୋ କାର୍ଯ୍ୟକଳାପ ସମ୍ପର୍କରେ କୌଣସି ସନ୍ଦେହ ପୋଷଣ କରା ନ ଯାଉ ।''

ତା ଉତ୍ତରରେ ପାଟଣା ମହାରାଜା ଲେଖିଥିଲେ ଯେ ଏ ପ୍ରସ୍ତାବ ଉପରେ ସେ ତ ମତ ଦେଇ ପାରିବେ ନାହିଁ । ରୁଲର୍ସ କାଉନ୍‌ସିଲ୍‌ର ପରବର୍ତ୍ତୀ ବୈଠକରେ ଏ ପ୍ରସ୍ତାବ ଆଲୋଚନା କରାଯିବ । ସେମାନେ ଏ ବିଷୟ ଆଲୋଚନା କରିସାରିଲା ପରେ ଯାଇ ସିନା କେଉଁଠି କେବେ ଭେଟ ହେବ ତା ଠିକ୍ କରାଯିବ ।

ସେ ଲେଖିଲେ

''I am glad to notice from your letter that the use of the word amalgamation was a loose use of terminology and that all that was intended was to secure the co-operation of the States for the co-ordination in planning and administration for the mutual benefit of the States and the Province.''

''ମୁଖର ବିଷୟ 'ମିଶ୍ରଣ' ଶବ୍ଦକୁ କି ଭଳି ହୁଗୁଳା ଭାବରେ ବ୍ୟବହାର କରାଯାଇଥିଲା ତାହା ଆପଣଙ୍କ ପତ୍ରରୁ ଜଣାପଡ଼ୁଛି । ପ୍ରକୃତ ଉଦ୍ଦେଶ୍ୟ ହେଉଛି ଉଭୟ ଗଡ଼ଜାତ ଓ ପ୍ରଦେଶର ସାଧାରଣ କଲ୍ୟାଣ ଦୃଷ୍ଟିରୁ ଯୋଜନା କାର୍ଯ୍ୟ ଓ ଶାସନ କାର୍ଯ୍ୟରେ ସମନ୍ୱୟ ରକ୍ଷାପାଇଁ ଗଡ଼ଜାତମାନଙ୍କର ସହଯୋଗ ଲାଭକରିବା ।''

କଳାହାଣ୍ଡି ମହାରାଜା ଉତ୍ତର ଦେଇ ଲେଖିଥିଲେ

"The Press publication about your demand for the amalgamation of Orissa States has created a good deal of misunderstanding in the mind of most of the Rulers. Anyway your D. O. circular letter has been able to make it clear that you want the co-ordination of Orissa States and Orissa Province.........etc."

"ଓଡ଼ିଶା ଗଡ଼ଜାତ ଗୁଡ଼ିକର ମିଶ୍ରଣ ଦାବୀକରି ଆପଣ ସମ୍ବାଦ ପତ୍ର-ମାନଙ୍କରେ ଯେଉଁ ଲେଖା ପ୍ରକାଶ କରିଛନ୍ତି ତାହା ଫଳରେ ଅଧିକାଂଶ ଗଡ଼ଜାତ ରାଜାଙ୍କ ମନରେ ନାନା ଭ୍ରମଧାରଣା ସୃଷ୍ଟି ହୋଇଛି । ଯାହାହେଉ, ଆପଣଙ୍କର ଏବର ଚିଠିରୁ ଜଣାପଡ଼ୁଛି ଯେ ଆପଣ ଓଡ଼ିଶା ଗଡ଼ଜାତର ଓଡ଼ିଶା ପ୍ରଦେଶ ସଙ୍ଗେ ଏକ ସମନ୍ୱୟ ରକ୍ଷ ବୋଲି ଚାହାନ୍ତି ।"

"But regarding the co-ordination of the States in the Province of Orissa in matters of administration, personally I do not appreciate the suggestion as the traditions of these different tracts have been built on different historical backgrounds."

"କିନ୍ତୁ ଶାସନ କାର୍ଯ୍ୟରେ ପ୍ରଦେଶ ଓ ଗଡ଼ଜାତ ମଧ୍ୟରେ ସମନ୍ୱୟ ରକ୍ଷିବା ସମ୍ପର୍କରେ ଯେଉଁ ପ୍ରସ୍ତାବ ହୋଇଛି, ବ୍ୟକ୍ତିଗତ ଭାବରେ ମୁଁ ତାହା ପସନ୍ଦ କରୁନାହିଁ । କାରଣ ଏହିସବୁ ବିଚ୍ଛିନ୍ନ ଅଞ୍ଚଳର ପରମ୍ପରା ଭିନ୍ନ ଭିନ୍ନ ଐତିହାସିକ ପରିସ୍ଥିତିରେ ଗଢ଼ା ହୋଇଛି ।"

ତାପରେ ମିଶ୍ରଣ ପ୍ରସ୍ତାବରୁ ଦୃଷ୍ଟି ଘୁଞ୍ଚାଇ ନେବାକୁ ଯାଇ

"Would it not be better if you will take up the amalgamation of the detached Oriya tracts as for example Midnapur District, Singhbhum District, parts of Vizag, Raipur and Bilaspur district and carve out a self-sufficient economic unit."

"ଯଦି ଆପଣ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ ଯଥା:—ମେଦିନୀପୁର ଜିଲ୍ଲା, ସିଂହଭୂମ ଜିଲା, ଭାଇଜାଗ, ରାୟପୁର ଓ ବିଳାସପୁର ଜିଲ୍ଲାର କେତେକ ଅଂଶର

ମିଶ୍ରଣ ବାବଦର ଆର୍ଥିକ ସ୍ଥିତି ଦୃଷ୍ଟିରୁ ଗୋଟିଏ ସ୍ୱାବଲମ୍ବୀ ଅଞ୍ଚଳ ଗଠନ ପାଇଁ ଲାଗନ୍ତେ ତେବେ ଏହା ଅପେକ୍ଷା ଭଲ ହୁଅନ୍ତା ନାହିଁକି ?"

ତାପରେ ପୁଣି ୧୯୪୭ ମସିହା ଅଗଷ୍ଟ ମାସ ୧୮ ତାରଖରେ ଶ୍ରୀଯୁକ୍ତ ମହତାବଙ୍କ ଚିଠିର ଉତ୍ତରରେ ଲେଖିଲେ :—

"You must have heard that we have decided to form a unit of the neighbouring States. The Chhatisgarh States also in most of which there is appreciable Oriya population have decided to join this unit........."

"ଆପଣ ନିଶ୍ଚୟ ଶୁଣିଥିବେ ଯେ ଆମେ ସବୁ ପଡ଼ୋଶୀ ଗଡ଼ଜାତକୁ ନେଇ ଗୋଟିଏ ଅଞ୍ଚଳ ଗଢ଼ିବା ସ୍ଥିର କରିଛୁ । ଛତିଶଗଡ଼ରାଜ୍ୟମାନେ ମଧ୍ୟ ଏଥିରେ ଯୋଗଦେବା ସ୍ଥିର କରିଛନ୍ତି । ଏଥିମଧ୍ୟରୁ ଅନେକରେ ବେଶି କିଛି ଓଡ଼ିଆ ଅଧିବାସୀ ଅଛନ୍ତି ।"

ପୁଣି

"To be very frank, the recent utterances of the Press of Orissa and your not making a public declaration that you do not advocate the merger or amalgamation of Orissa States in the Province of Orissa have created a good deal of reasonable apprehension in the mind of most of us that you indirectly support the Press without considering for a moment the past history and tradition of these States etc."

"So unless and until you deny the Press report and give up your Parsuram-like attitude no fruitful decision can be arrived at by our meetings at this stage."

"ସତ କହିଲେ ଗତ କେତେ ଦିନ ହେଲା ଓଡ଼ିଶାର ସମ୍ବାଦପତ୍ରମାନଙ୍କରେ ଯେଉଁଳି ଲେଖା ପ୍ରକାଶ ପାଉଛି ଓ ଆପଣ ଗଡ଼ଜାତଗୁଡ଼ିକର ମିଶ୍ରଣ ଚାହାନ୍ତି ନାହିଁ—ଏ କଥା ସାଧାରଣରେ ଘୋଷଣା ନ କରୁଥିବାରୁ ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କ ମନରେ ସ୍ୱତଃ ଆଶଙ୍କା ହେଉଛି ଯେ ଏହିସବୁ ଗଡ଼ଜାତର ଅତୀତ ଇତିହାସ ଓ ପରମ୍ପରା କଥା ମୋଟେ ନ ଭାବି ଆପଣ ପରୋକ୍ଷରେ ଏହି ସମ୍ବାଦପତ୍ର ଲେଖାମାନଙ୍କୁ ସମର୍ଥନ କରୁଛନ୍ତି ।"

ତେଣୁ ଆପଣ ଏ ସବୁ ସମ୍ବାଦପତ୍ରରେ ପ୍ରକାଶ ପାଉଥିବା ଲେଖାକୁ ଅସ୍ୱୀକାର ନ କରିବା ଯାଏ ଓ ଆପଣ ପର୍ଶୁରାମଙ୍କ ଭଳି ଯେଉଁ ମନୋଭାବ ଧରିଛନ୍ତି ତାହା ନ ଛାଡ଼ିବାଯାଏ ବର୍ତ୍ତମାନ ଅବସ୍ଥାରେ ଆମ୍ଭମାନଙ୍କ ମଧ୍ୟରେ ସାକ୍ଷାତ ଦ୍ୱାରା କୌଣସି ସୁଫଳ ଫଳିବ ନାହିଁ ।"

ସେତିକବେଳେ ପଣ୍ଡିତ ଜବାହରଲାଲ ନେହେରୁ ଶ୍ରୀଯୁକ୍ତ ମହତାବଙ୍କ ପାଖକୁ ତାର ବାର୍ତ୍ତା ପଠାଇଲେ:—

"Your telegram. Agree with you. Small States particularly Orissa States should be amalgamated in the province ."

"ଆପଣଙ୍କ ତାର ପାଇଛୁ । ଆପଣଙ୍କ ସହିତ ମୁଁ ଏକମତ । ଛୋଟ ଛୋଟ ଗଡ଼ଜାତ, ବିଶେଷତଃ ଓଡ଼ିଶା ଗଡ଼ଜାତଗୁଡ଼ିକ ପ୍ରଦେଶରେ ମିଶିଯିବା ଉଚିତ ।"

ତା ପରେ ୧୯୪୭ ଜୁଲାଇ ୧୨ ରୁ ୧୮ ତାରିଖ ପର୍ଯ୍ୟନ୍ତ କଲିକତାରେ ଗଡ଼ଜାତ ଶାସକମାନଙ୍କର ଯେଉଁ ଆଲୋଚନା ସଭା ବସିଲା ସେଥିରେ ଓଡ଼ିଶା ଗଡ଼ଜାତ ଛତିଶଗଡ଼ ସହିତ ମିଶି ବ୍ରିଟିଶ ଭାରତର ପ୍ରଦେଶ ଭଳି କପରି ଗୋଟିଏ "ୟୁନିଟ୍" ଗଢ଼ାଯାଇ ପାରିବ ସେ ବିଷୟରେ ବିସ୍ତୃତ ଆଲୋଚନା କରାଗଲା । ଓଡ଼ିଶା ଓ ଶ୍ରୀଯୁକ୍ତ ମହତାବଙ୍କ ପ୍ରସ୍ତାବ କଥା ଉଠିବାରୁ ପାଟଣା ମହାରାଜା କହିଲେ:—

"......Mr. Mahatab's attitide to States had always been hostile and had lately become worse and he and his party had started agitation in the States and they were trying to depict States as part of Orissa."

"ଶ୍ରୀ ମହତାବଙ୍କର ଗଡ଼ଜାତ ସମ୍ପର୍କରେ ବରାବର ବିରୁଦ୍ଧ ମତ ରହିଛି । ଏବେ ଏହି ବିରୋଧ ଆହୁରି ତୀବ୍ର ହୋଇଛି । ସେ ଓ ତାଙ୍କଦଳ ଗଡ଼ଜାତରେ ଆନ୍ଦୋଳନ କରାଇଥିଲେ ଓ ଗଡ଼ଜାତଗୁଡ଼ିକ ଓଡ଼ିଶାର ଅଂଶ ବୋଲି ବରାବର ଚିତ୍ର କରୁଥିଲେ ।"

"When the Congress went out of office, the States had very cordial relations with the Orissa Government especially over such matters as the Utkal University, the M. V. Scheme, and the States contribution to the Medical College,"

"କଂଗ୍ରେସ ଗାଦି ଛାଡ଼ିବା ପରେ ଓଡ଼ିଶା ପ୍ରାଦେଶିକ ସରକାରଙ୍କ ସହିତ ଗଡ଼ଜାତ ଗୁଡ଼ିକର ଖୁବ୍ ମଧୁର ସମ୍ପର୍କଥିଲା ବିଶେଷତଃ, ଉତ୍କଳ ବିଶ୍ୱବିଦ୍ୟାଳୟ,

ଏମ. ଭି. ଯୋଜନା ଓ ମେଡ଼ିକେଲ୍ କଲେଜ ପାଇଁ ଅର୍ଥ ସାହାଯ୍ୟ ଇତ୍ୟାଦି ବିଷୟରେ ଖୁବ୍ ଭଲ ସମ୍ପର୍କଥିଲା ।”

୧୯୪୭ ଅକ୍ଟୋବର ୧୭ ତାରିଖରେ ସମ୍ବଲପୁରରେ ଓଡ଼ିଶାର ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଓ ରାଜାମାନଙ୍କ ମଧ୍ୟରେ ଆଲୋଚନା ସଭା ବସିଲା । ଶ୍ରୀଯୁକ୍ତ ମହତାବ, ପଲିଟିକାଲ ଏଜେଣ୍ଟ, ସୋନପୁର ମହାରାଜା, ସରାଇକଳା ରାଜାସାହେବ, ଖରସୁଆଁ, ଦଶପଲ୍ଲା, ବୌଦର ରାଜାମାନେ ଉପସ୍ଥିତ ଥିଲେ । ସେ ସଭାର ବିବରଣୀରୁ ଉଦ୍ଧାରକରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏସେମ୍ବ୍ଲି ସଭା ଗୃହରେ ୧୯୪୯ ଅପ୍ରେଲ ୨୨ ତାରିଖରେ ଯେପରି ପୁଙ୍ଖାନୁପୁଙ୍ଖରୂପେ ସମାଲୋଚନା କରିଥିଲେ ଓ ସଭାଗୃହରେ ତାହା ଉପରେ ଯେଉଁ ବାଦାନୁବାଦ ହୋଇଥିଲା ତାହା ଅତି ଗୁରୁତ୍ୱପୂର୍ଣ୍ଣ ଓ ମିଶ୍ରଣ ପ୍ରସ୍ତାବ ସମ୍ପର୍କରେ ରଜା-ମହାରାଜାମାନଙ୍କର ସେ କାଳର ମନୋଭାବ ଓ ଏପରି କି ବର୍ତ୍ତମାନର ମାନସିକ ପ୍ରକ୍ରିୟାର ଗୋଟିଏ ଚିତ୍ର ସେଥିରୁ ସ୍ପଷ୍ଟ ହୋଇ ଉଠୁଛି । ସରାଇକଳା ରାଜା ସେ ସଭାର ଯେଉଁ ବିବରଣୀ ପ୍ରସ୍ତୁତ କରିଥିଲେ ସେଥିରୁ ନିମ୍ନଲିଖିତ ମତେ ଆଲୋଚନା ହୋଇଥିଲା ବୋଲି ଜଣାପଡ଼ୁଛି ।

ଶ୍ରୀଯୁକ୍ତ ମହତାବ ତାଙ୍କର ଯୋଜନା ଉପସ୍ଥାପିତ କରିବାକୁ ଯାଇ କହିଲେ ଯେ ପୂର୍ବ ଗଡ଼ଜାତ ରଜାମାନେ ତାଙ୍କୁ ସେମାନଙ୍କର ଶତ୍ରୁ ବୋଲି ମନେ କରୁଥିଲେ, ସେ ପ୍ରକୃତ ଅବସ୍ଥା ବୁଝାଇ ଦେବାକୁ ଚାହାନ୍ତି ଓ ସେଥିରୁ ରାଜାମାନଙ୍କର ହୃଦବୋଧ ହେବ ଯେ ସେମାନେ ତାଙ୍କୁ ଯେତେ ଖରାପ ଲୋକ ବୋଲି ଭାବୁଥିଲେ ପ୍ରକୃତରେ ସେ ସେଭଳି ନୁହନ୍ତି ।

ଗଡ଼ଜାତ ରାଜାମାନଙ୍କ ପକ୍ଷରୁ ସରାଇକଳା ରାଜା ଉତ୍ତର ଦେଇ କହିଲେ ଯେ ସେମାନେ ରାଜାମାନଙ୍କର କମିଟିକୁ ଏ ସବୁ ବିଷୟ ଜଣାଇବେ । ବର୍ତ୍ତମାନ ଅବସ୍ଥାରେ ସେମାନେ କୌଣସି ନିର୍ଦ୍ଦିଷ୍ଟ ମତାମତ ଦେଇ ପାରିବେ ନାହିଁ । ସେ କହିଲେ ଯେ କ୍ୟାବିନେଟ ମିଶନଙ୍କ ପ୍ରସ୍ତାବ ଓ ବ୍ରିଟିସ ସାର୍ବଭୌମ କ୍ଷମତାର ଅବସାନ ଫଳରେ ସାମାନ୍ୟ କେତୋଟି କେନ୍ଦ୍ରୀୟ ବିଷୟ ଛଡ଼ା ବାକି ସବୁ ବିଷୟରେ ଗଡ଼ଜାତଗୁଡ଼ିକ ପ୍ରଦେଶପରି ସ୍ୱାଧୀନ ରହିବେ, କିନ୍ତୁ ଏମା [illegible] ଆଭ୍ୟନ୍ତରୀଣ ଶାନ୍ତିଶୃଙ୍ଖଳା ରକ୍ଷାପାଇଁ ବ୍ରିଟିସ ସରକାରଙ୍କଠାରୁ ଯେଉଁ ସାହାଯ୍ୟ ମିଳୁଥିଲା ସେଥିରୁ ସେମାନେ ବଞ୍ଚିତ ହେବେ । ଏହି ଦୃଷ୍ଟିରୁ ନିଜ ଭିତରେ ଗୋଟିଏ ବନ୍ଦୋବସ୍ତ କରି ପଡ଼ୋଶୀ ପ୍ରଦେଶ ଓ ସମ୍ଭବତଃ କ୍ୟାବିନେଟ ମିଶନଙ୍କ ପ୍ରସ୍ତାବର ‘କ’ ଦଫା ବର୍ଣ୍ଣିତ ରାଜ୍ୟମାନଙ୍କର ସହଯୋଗ ଲୋଡ଼ିବା ଦରକାର ହେବ ।

ଗଡ଼ଜାତ ଗୁଡ଼ିକ ସବୁବେଳେ ଓଡ଼ିଶା ସରକାରଙ୍କ ସହିତ ସହଯୋଗ କରି ଆସୁଥିଲେ । କିନ୍ତୁ ୧୯୩୮ ରେ ଯେତେବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳ କ୍ଷମତାକୁ

ଆସିଲେ ସେତେବେଳେ ଗଡ଼ଜାତମାନଙ୍କରେ ଆନ୍ଦୋଳନ ଲାଗିଲା ଓ ଏହି ଆନ୍ଦୋଳନକାରୀମାନଙ୍କୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଉତ୍ସାହ ଦେଇଥିଲେ । ସେହି ପ୍ରସଙ୍ଗରେ ବିବରଣୀରେ ଲେଖାଅଛି :—

"Later when the Parlakimedi Ministry came into power they showed friendly and neighbourly attitude towards the States and as a result the Orissa University came into being with the co-operation of the States and the Province. Unfortunately again, with the advent of the Congress Ministry the same agitation has been revived, the Press reports challenging the very existence of the States and their Rulers, and Congress workers going into the States to foment discontentments. Nazi methods were being advocated to win over the people against the States and their rulers for which the Rulers thought that the present Ministry was responsible."

"ପରେ ଯେତେବେଳେ ପାରଳାଖେମଣ୍ଡି ମନ୍ତ୍ରିମଣ୍ଡଳ ଶାସନଭାର ଗ୍ରହଣକଲେ (ପାରଳାଖେମଣ୍ଡି ମହାରାଜା, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଶ୍ରୀ ଲଛମନ ଖାଁ ସେହି ମନ୍ତ୍ରିମଣ୍ଡଳ ଗଢ଼ିଥିଲେ) ସେମାନେ ଗଡ଼ଜାତ ପ୍ରତି ବନ୍ଧୁ ଓ ପଡ଼ୋଶୀ ମନୋଭାବ ଦେଖାଇଥିଲେ ଏବଂ ଏହା ଫଳରେ ଗଡ଼ଜାତ ଓ ପ୍ରଦେଶର ସହଯୋଗରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ଦୁର୍ଭାଗ୍ୟକୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଆସିବାରେ ପୂର୍ବ ଆନ୍ଦୋଳନ ପୁଣି ଆରମ୍ଭ ହୋଇଛି । ଗଡ଼ଜାତ ଓ ତାର ଶାସକମାନଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରି ସମ୍ବାଦପତ୍ରମାନଙ୍କରେ ଲେଖା ବାହାରୁଛି । କଂଗ୍ରେସ କର୍ମୀମାନେ ଗଡ଼ଜାତ ଭିତରକୁ ଯାଇ ଲୋକଙ୍କୁ ଉତ୍ତେଜାଉଛନ୍ତି । ଗଡ଼ଜାତ ଓ ରାଜାମାନଙ୍କ ବିରୁଦ୍ଧରେ ଲୋକଙ୍କୁ ମତାଇବା ପାଇଁ ନାଜୀ ପ୍ରଣାଳୀ ଅନୁସରଣ କରାଯାଉଛି । ଏଥିପାଇଁ ବର୍ତ୍ତମାନ କଂଗ୍ରେସ ମନ୍ତ୍ରୀମଣ୍ଡଳ ଦାୟୀ ବୋଲି ରାଜାମାନେ ଭାବୁଛନ୍ତି ।"

"If such agitation could be checked during the Parlakimedi Ministry, why could it not be checked now? Mr. Mahtab said that he could not pass a legislation against the Press, as their motto was freedom of speech and press, but the Raja of Saraikella pointed out to him

that they do not want any anti-press legislation to curb the freedom of the Press, but said that whenever any false report against the States is published in the Press, the Ministry or Mr. Mahatab can challenge the statement by merely quoting the words "it is not true" and in the same way false reports about the States should be contradicted. Mr. Mahatab said that during the Parlakimedi Ministry the D.I.R. was in force which was not the case now and when the foundation stone of the Hirakud Dam was laid there was no agitation but now the agitation has started and how could he be held responsible for it ?"

"ଏହି ଆନ୍ଦୋଳନ ଯଦି ପାରଳାଖେମଣ୍ଡି ମନ୍ତ୍ରିମଣ୍ଡଳ ବେଳେ ଦବାଇ ଦିଆଯାଇ ପାରୁଥିଲା ତେବେ ବର୍ତ୍ତମାନ ତାହା ନ ହୋଇ ପାରୁଛି କାହିଁକି ? ଶ୍ରୀ ମହତାବ କହିଲେ ଯେ ସେ ସମ୍ବାଦପତ୍ରମାନଙ୍କ ବିରୁଦ୍ଧରେ ଆଇନ କରି ପାରିବେ ନାହିଁ । କାରଣ ସମ୍ବାଦପତ୍ର ସ୍ୱାଧୀନତା ଓ ମତ ପ୍ରକାଶର ସ୍ୱାଧୀନତା ତାଙ୍କର ଆଦର୍ଶ । କିନ୍ତୁ ସରାଇକେଲାର ରାଜା ସାହେବ ତାଙ୍କୁ ଦର୍ଶାଇଥିଲେ ଯେ ସମ୍ବାଦପତ୍ରର ସ୍ୱାଧୀନତା ଖର୍ବ କରିବା ପାଇଁ ସେ କୌଣସି ଆଇନ ଚାହୁଁ ନାହାନ୍ତି । ଯେତେବେଳେ ଗଡ଼ଜାତମାନଙ୍କ ସମ୍ପର୍କରେ କୌଣସି ମିଥ୍ୟା ସମ୍ବାଦ ପ୍ରକାଶିତ ହୁଏ ସେତେବେଳେ ମନ୍ତ୍ରୀମଣ୍ଡଳ ବା ଶ୍ରୀ ମହତାବ ତାର ପ୍ରତିବାଦ କରି ତାହା ସତ୍ୟ ନୁହେ ବୋଲି କହିବା ଉଚିତ । ଏହିଭଳି ଭାବରେ ଗଡ଼ଜାତ ସମ୍ପର୍କରେ ମିଥ୍ୟା ସମ୍ବାଦର ପ୍ରତିବାଦ ହେବା ଉଚିତ । ଶ୍ରୀ ମହତାବ କହିଲେ ଯେ ପାରଳାଖେମଣ୍ଡି ମନ୍ତ୍ରିମଣ୍ଡଳ ବେଳେ ଡି. ଆଇ ଅର୍. ଚାଲୁ ରହିଥିଲା । କିନ୍ତୁ ବର୍ତ୍ତମାନ ତାହା ନାହିଁ । ହୀରାକୁଦ ବନ୍ଧର ଶୁଭ ଦିଆଗଲାବେଳେ କୌଣସି ଆନ୍ଦୋଳନ ନ ଥିଲା, କିନ୍ତୁ ବର୍ତ୍ତମାନ ଆନ୍ଦୋଳନ ଚାଲିଛି ଓ ସେଥିପାଇଁ ତାଙ୍କୁ ଦାୟୀ କରାଯାଇ ପାରେ କି ?"

"Mr. Mahatab said that he saw Maharaja of Patna helping the Hirakud agitation to which the Maharaja of Sonepur and the Raja of Saraikella said that not a single pie was subscribed for it. Then the Maharaja of Sonepur said that if he could not use his legal force he could use his moral support by issuing statements etc."

**"After explaining the benefits of the proposed Union, the Raja of Saraikella pointed out that the Rulers' Union would be strong enough to stand on its own legs. Mr. Mahatab proposed that Orissa also might be taken as a unit in the Union."**

"ଶ୍ରୀ ମହତାବ କହିଲେ ଯେ ପାଟଣାର ମହାରାଜା ସ୍ୱେରକୃତ ଆନ୍ଦୋଳନକୁ ସାହାଯ୍ୟ କରିବାର ସେ ଦେଖିଛନ୍ତି । ଏହାର ଉତ୍ତରରେ ସୋନପୁରର ମହାରାଜା ଓ ଷରେଇକଳାର ରାଜା କହିଲେ ଯେ ଏଥିପାଇଁ ପଇସାଟିଏ ବି ଦିଆଯାଇ ନାହିଁ । ସୋନପୁରର ମହାରାଜା କହିଲେ ଯଦି ଶ୍ରୀ ମହତାବ ଆଇନ ପ୍ରୟୋଗକରି ଏହା କରି ନ ପାରନ୍ତି ତେବେ ଅନ୍ତତଃ ବକ୍ତୃତ ଇତ୍ୟାଦି ଦେଇ ତାଙ୍କର ନୈତିକ ସମର୍ଥନ ଦେଇପାରନ୍ତି ।"

"ପ୍ରସ୍ତାବିତ 'ଇଉନିୟନ'ର ଉପକାର ବୁଝାଇ ଷରେଇକଳାର ରାଜା ଦର୍ଶାଇଲେ ଯେ ରାଜାମାନଙ୍କ ଇଉନିୟନ ନିଜ ଗୋଡ଼ରେ ଛିଡ଼ା ହେବା ଭଳି ଟାଣହୋଇ ପାରିବ । ଶ୍ରୀ ମହତାବ ପ୍ରସ୍ତାବ କଲେ ଯେ ସେ ଇଉନିୟନରେ ଓଡ଼ିଶା ମଧ୍ୟ ଗୋଟିଏ ଇଉନିଟ ହିସାବରେ ନିଆଯାଇପାରେ ।"

"To this point, after quoting figures, the Raja of Saraikella pointed out that area and income being almost equal, a Union with the Orissa Province will put a burden of extra 62 lakhs of population on the Union with Orissa."

**"Mr. Mahatab said that they had no objection to the proposed Union with the Chhattisgarh States if the Orissa province might be taken as a Unit and whatever name—Koshal, Mahakoshal or any other might be given to the proposed Union. The Raja-Saheb of Saraikella said that in that case also the population of Orissa being 90 lakhs, it will always have a majority and as such dictate terms to the minorities in the States to which Mr. Mahatab replied that population factor did not always count and it was the intelligent people, however small they might be, who would always lead the rest."**

"ଏହି ସମ୍ପର୍କରେ ହିସାବ ଉଦ୍ଧାର କରି ଷଢ଼େଇକଳା ରାଜା ଦର୍ଶାଇଲେ ଯେ ଗଡ଼ଜାତ ଓ ପ୍ରଦେଶର ଆୟବ୍ୟୟ ଏବଂ ଆୟ ପ୍ରାପ୍ତ ସମାନ ଥିବାରୁ ଓଡ଼ିଶା ପ୍ରଦେଶ ସହିତ ମିଶି ଗୋଟିଏ ୟୁନିୟନ ଗଢ଼ିଲେ ଓଡ଼ିଶା ପ୍ରଦେଶର ଅଧିକା ୬୨ ଲକ୍ଷ ଲୋକଙ୍କ ଭାର ୟୁନିୟନ ଉପରେ ପଡ଼ିବ ।

ଶ୍ରୀ ମହତାବ କହିଲେ ଯେ ଯଦି ଓଡ଼ିଶା ପ୍ରଦେଶକୁ ଗୋଟିଏ ୟୁନିଟ ହିସାବରେ ନିଆଯାଏ ତେବେ ଛତିଶଗଡ଼ ଗଡ଼ଜାତଗୁଡ଼ିକର ଏହି ପ୍ରସ୍ତାବିତ ୟୁନିୟନରେ ମିଶ୍ରଣରେ ତାଙ୍କର କୌଣସି ଆପତ୍ତି ନାହିଁ । ଏହି ପ୍ରସ୍ତାବିତ ୟୁନିୟନକୁ କୋଶଳ, ମହାକୋଶଳ ବା ଅନ୍ୟ ଯେକୌଣସି ନାମ ଦିଆଯାଇ-ପାରେ । ଷଢ଼େଇକଳାର ରାଜାସାହେବ କହିଲେ ଯେ ଓଡ଼ିଶା ପ୍ରଦେଶର ଲୋକ ସଂଖ୍ୟା ୯୦ ଲକ୍ଷ ହୋଇଥିବାରୁ ପ୍ରସ୍ତାବିତ ୟୁନିୟନରେ ସେମାନେ ସଂଖ୍ୟାଗରିଷ୍ଠ ହେବେ ଓ ତେଣୁ ସେମାନେ ସଂଖ୍ୟାଲଘୁ ଗଡ଼ଜାତବାସୀଙ୍କ ଉପରେ ଜବରଦସ୍ତି ତାଙ୍କ ମତ ଲଦିଦେଇ ପାରିବେ । ଶ୍ରୀ ମହତାବ କହିଲେ ଯେ ଲୋକସଂଖ୍ୟା ସବୁବେଳେ ବଡ଼ କଥା ନୁହେ । ଯେତେ ଅଳ୍ପ ସଂଖ୍ୟକ ହେଲେ ମଧ୍ୟ ବୁଦ୍ଧିମାନ ଲୋକେହିଁ ଅନ୍ୟମାନଙ୍କର ନେତା ହେବେ ।"

"Then the Rajasaheb of Saraikella asked whether Mr. Mahatab is ready to enter their Union on their terms. Mr. Mahatab asked Raja Saheb of Saraikella what their terms were to which the Raja of Saraikella replied that he could not divulge his terms without consulting his brother Rulers and asked Mr. Mahatab to supply his scheme or schemes so that they could consider it carefully."

"ତହିଁ ଷଢ଼େଇକଳାର ରାଜା ପଚାରିଲେ—ରାଜାମାନଙ୍କ ସର୍ତ୍ତରେ ତାଙ୍କ ୟୁନିୟନରେ ଯୋଗ ଦେବାକୁ ଶ୍ରୀ ମହତାବ ରାଜି ହେବେ କି ? ଶ୍ରୀ ମହତାବ ପଚାରିଲେ—ସେମାନଙ୍କର ସର୍ତ୍ତ କଣ । ଷଢ଼େଇକଳାର ରାଜା କହିଲେ ଯେ ସେ ତାଙ୍କ ସଙ୍ଗୀ ରାଜାମାନଙ୍କ ସହିତ ପରାମର୍ଶ ନ କରି ଏହା ପ୍ରକାଶ କରି ପାରିବେନାହିଁ । ଶ୍ରୀ ମହତାବଙ୍କୁ ସେ କହିଲେ ତାଙ୍କର କଣ ପ୍ରସ୍ତାବ ଅଛି ଦିଅନ୍ତୁ—ସେମାନେ ତାହା ସାବଧାନତାର ସହିତ ବିଚାର କରିବେ ।"

ଅନ୍ୟ କଥା ଯାହାହେଉ, ଉଦ୍ଦେଶ୍ୟସାଧନ ଦିଗରେ ଏ ଆଲୋଚନାରୁ କିଛି ଫଳ ଫଳିବା ଆଶା ଦେଖାଗଲା ନାହିଁ । ଚେମ୍ବର ଅଫ ପ୍ରିନ୍ସେସର

ଚାନସେଲର ଭୋପାଳର ନବାବଙ୍କ ସଙ୍ଗେ ଆଲୋଚନା କଲେ କୌଣସି ଗୋଟେ ରାସ୍ତା ଦେଖାଯିବ ଏହି ଆଶାନେଇ ଶ୍ରୀଯୁକ୍ତ ମହତାବ ଭୋପାଳ ଯାଇ ନବାବଙ୍କର ଅତିଥି ହୋଇ ଦୁଇଦିନ ରହି ସବୁ ବିଷୟ ନବାବଙ୍କ ସଙ୍ଗେ ଖୋଲା ଖୋଲି କରି ଆଲୋଚନା କଲେ । କେତେକ ବିଷୟରେ ସେମାନଙ୍କ ମଧ୍ୟରେ ବୁଝାବୁଝି ହୋଇଗଲା । ତା' ପରେ କନଷ୍ଟିଚ୍ୟୁସନାଲ ଏଡ୍‌ଭାଇଜର ସାର ବି. ଏନ୍. ରାଓଙ୍କୁ ଭେଟି ତାଙ୍କର ମତାମତ ସଂଗ୍ରହ କରି ଶ୍ରୀଯୁକ୍ତ ମହତାବ ଧୈର୍ଯ୍ୟ ଓ ଦୃଢ଼ତାର ସହିତ ଆଗେଇ ଚାଲିଲେ ।

ଏଣେ ପାଟଣା ମହାରାଜା ପ୍ରଚାର ଆରମ୍ଭ କରିଦେଇଥିଲେ ଯେ ଓଡ଼ିଶାରେ ଏହି ଗଡ଼ଜାତ ରାଜ୍ୟଗୁଡ଼ିକ ଓ ସମ୍ବଲପୁର ଜିଲ୍ଲା ଓଡ଼ିଶା ରାଜ୍ୟର ଅନ୍ତର୍ଭୁକ୍ତ ନୁହନ୍ତି, ସେମାନେ ପୁରାତନ କୋଶଳ ରାଜ୍ୟର ଅଂଶ । ସମ୍ବଲପୁର-ବାସୀଙ୍କୁ ଏ ଦିଗରେ ମତାଇବାପାଇଁ ଗୋଟିଏ ସୁଯୋଗ ମିଳିଗଲା । ହୀରାକୁଦ ଯୋଜନା କାର୍ଯ୍ୟ ସେତେବେଳକୁ ଆରମ୍ଭ ହୋଇଥାଏ ଓ ସେଥିପାଇଁ ଶତାଧିକ ଗ୍ରାମ ଏକୁଆର କରିବା ଦରକାର ପଡ଼ିଗଲାଣି । ଯେଉଁମାନଙ୍କର ଜମି ଚାଲି ଯାଉଛି ସେମାନେ ବଡ଼ ବିବ୍ରତ ହୋଇ ପଡ଼ିଥିବା ଅବସ୍ଥାରେ ପାଟଣା ମହାରାଜାଙ୍କର ଓଡ଼ିଶା-ବିରୋଧୀ ଓ ମିଶ୍ରଣ-ବିରୋଧୀ ଦଳ ଏବଂ ପ୍ରଚାର ଓ ପରୋକ୍ଷ ସାହାଯ୍ୟ ସେମାନଙ୍କୁ ଉତ୍ସାହ ଓ ଉତ୍ତେଜନା ଯୋଗାଇଲା । ଓଡ଼ିଶା ସରକାରଙ୍କର ସୁଦୃଢ଼ ଓ ଆଶୁ କାର୍ଯ୍ୟାନୁଷ୍ଠାନ ଫଳରେ ପରିସ୍ଥିତି ଆୟତ୍ତ କରାଗଲା ଓ ପାଟଣା ମହାରାଜାଙ୍କ କାର୍ଯ୍ୟକଳାପ ପ୍ରତି ଭାଇସରୟଙ୍କ ଦୃଷ୍ଟି ଆକର୍ଷଣ କରାଗଲା । ଏ ସମ୍ପର୍କରେ ଟଡ୍ ସାହେବ ଆମର ତତ୍କାଳୀନ ଗଭର୍ଣ୍ଣର ସାର ଚନ୍ଦୁଲାଲ ତ୍ରିବେଦୀଙ୍କ ପାଖକୁ ୧୯୪୭ ଜାନୁଆରୀ ୮ ତାରିଖରେ ଯେଉଁ ଚିଠି ଲେଖିଥିଲେ ସେଥିରେ ସେ ଲେଖିଥିଲେ :—

"He welcomes the move in Sambalpur to join the Eastern States Federation and sees nothing objectionable in such a move pointing out the many proposals in other parts of India for New Provinces.

As you probably know the Patna Rulers have always claimed that they were unjustly deprived of certain parts of Sambalpur territory by the British when they took over from the Bhonslas. Only a few years ago the present Maharaja of Patna, unsuccessfully memorialised the Viceroy for the rendition of these parts. He, however, appreciates that such matters can only be settled by negotiation and through the Constituent Assembly."

"ପୂର୍ବ ଗଡ଼ଜାତ ଫେଡ଼େରେସନରେ ଯୋଗଦେବା ପାଇଁ ସମ୍ବଲପୁରରେ ଯେଉଁ ପ୍ରସ୍ତାବ ହୋଇଛି ତାକୁ ସେ (ପାଟଣା ମହାରାଜା) ସ୍ୱାଗତ କରୁଛନ୍ତି । ତାଙ୍କ ମତରେ ଏଥିରେ ଆପତ୍ତି କରିବାର କିଛି ନାହିଁ । ଭାରତର ଅନ୍ୟ ଆଡ଼େ ନୂଆ ପ୍ରଦେଶ ସୃଷ୍ଟି ପାଇଁ ନାନା ପ୍ରସ୍ତାବ ହେଉଛି ବୋଲି ମଧ୍ୟ ସେ ଦର୍ଶାଇଛନ୍ତି ।

ଆପଣ ବୋଧହୁଏ ଜାଣନ୍ତି ଯେ ପାଟଣାର ରାଜାମାନେ ବରାବର ଦାବୀ କରୁଛନ୍ତି ଯେ ଭୋନ୍‌ସଲମାନଙ୍କଠାରୁ ଇଂରେଜମାନେ ରାଜ୍ୟ ଦଖଲ କଲାବେଳେ ପାଟଣ ରାଜାଙ୍କଠାରୁ ସମ୍ବଲପୁରର କେତେକ ଅଂଶ ଅନ୍ୟାୟଭାବେ ଛଡ଼ାଇ ନେଇଛନ୍ତି । ଅଳ୍ପ କେତେବର୍ଷ ତଳେ ପାଟଣାର ବର୍ତ୍ତମାନ ମହାରାଜା ବଡ଼ଲାଟଙ୍କ ନିକଟରେ ଏହି ଅଞ୍ଚଳ ଫେରି ପାଇବାପାଇଁ ଏକ ସ୍ମାରକପତ୍ର ଦେଇଥିଲେ । କିନ୍ତୁ ସେଥିରେ ସେ କୃତକାର୍ଯ୍ୟ ହୋଇ ନ ଥିଲେ । ସେ ଅବଶ୍ୟ ବୁଝୁଛନ୍ତି ଯେ ଏଭଳି ବିଷୟର ସମାଧାନ କେବଳ ଆପୋଷ ଆଲୋଚନାଦ୍ୱାରା ଓ ଶାସନବିଧାୟକ ସର୍ତ୍ତ ଜରିଆରେ ହୋଇ ପାରିବ ।"

"The Maharaja mentioned other incidents which in his mind conclusively proved that deliberate campaign had been fomented from Cuttack to embarass his Government. In view of all this subversive activity from Orissa he asks how could it be expected that he would not welcome a move in Sambalpur to re-establish the old hereditary association with Patna and neighbouring States ?"

"ମହାରାଜା ଅନ୍ୟ କେତେକ ଘଟଣାର ଉଲ୍ଲେଖ କରିଥିଲେ ଯଦ୍ୱାରା ତାଙ୍କ ମତରେ ଏହା ସ୍ପଷ୍ଟ ଭାବରେ ପ୍ରମାଣିତ ହୋଇଛି ଯେ ତାଙ୍କ ସରକାରକୁ ହଇରାଣ କରିବାପାଇଁ କଟକରୁ ଜାଣି ଶୁଣି ଆନ୍ଦୋଳନ କରାଯାଇଛି । ଓଡ଼ିଶାରୁ ତାଙ୍କ ରାଜ୍ୟ ବିରୁଦ୍ଧରେ ଏ ଭଳି ଷଡ଼ଯନ୍ତ୍ରମୂଳକ ଆନ୍ଦୋଳନ ହେଉଥିବା ବେଳେ, ପାଟନା ଓ ପଡ଼ୋଶୀ ଗଡ଼ଜାତମାନଙ୍କ ସହ ମିଶି ତାଙ୍କ ପୂର୍ବବଂଶସମ୍ପର୍କ ପୁନର୍ପ୍ରତିଷ୍ଠିତ ହେବା ପାଇଁ ସମ୍ବଲପୁରରେ ହେଉଥିବା ପ୍ରସ୍ତାବକୁ ସେ କିପରି ବା ସ୍ୱାଗତ ନ କରିବେ ବୋଲି ପ୍ରଶ୍ନ କରିଛନ୍ତି ।"

ସ୍ୱୟଂ ପାଟଣା ମହାରାଜା ତାଙ୍କ ୧୯୪୭ ଫେବୃଆରୀ ୧୦ ତାରିଖ ଚିଠିରେ ଆହୁରି ସ୍ପଷ୍ଟ କରି ଛତିଶଗଡ଼ ପଲିଟିକାଲ ଏଜେଣ୍ଟଙ୍କୁ ଲେଖିଥିଲେ—

"Further, as is well-known, it was Mr. Mahatab who started this agitation for amalgamation of States with the

Province of Orissa and only as a counter-blast, the movement for amalgamating Sambalpur with the Eastern States and forming the Koshal Province was launched."

"ପୁଣି ଏକଥା ଜଣାଶୁଣା ଯେ ଶ୍ରୀ ମହତାବ ଗଡ଼ଜାତଗୁଡ଼ିକୁ ପ୍ରଦେଶ ସହ ମିଶାଇ ଦେବାପାଇଁ ଆନ୍ଦୋଳନ ଆରମ୍ଭ କଲେ । ତେଣୁ ଏହାର ପ୍ରତ୍ୟୁତ୍ତର ସ୍ୱରୂପ ସମ୍ବଲପୁରକୁ ପୂର୍ବ ଗଡ଼ଜାତ ସହ ମିଶାଇ ଗୋଟାଏ କୋଶଳ ପ୍ରଦେଶ ଗଠନ ଆନ୍ଦୋଳନ ଆରମ୍ଭ କରାଗଲା ।"

୧୯୪୭ ମାର୍ଚ୍ଚ ୨ ତାରିଖରେ ସାର୍ ଚନ୍ଦୁଲାଲ ଶ୍ରୀଯୁକ୍ତ ମହତାବଙ୍କୁ ଲେଖିଲେ "

"I have just heard from His Excellency the Viceroy that Corfield has again warned the Maharaja of Patna against associating himself with any agitation against the Orissa Government."

"ମୁଁ ବର୍ତ୍ତମାନ ମାନ୍ୟବର ବଡ଼ଲାଟଙ୍କଠାରୁ ଶୁଣିଲି ଯେ କରଫିଲ୍ଡ ପାଟନା ମହାରାଜାଙ୍କୁ ପୁଣି ସତର୍କ କରି ଦେଇଛନ୍ତି ଯେ ସେ ଓଡ଼ିଶା ସରକାର ବିରୁଦ୍ଧରେ କୌଣସି ଆନ୍ଦୋଳନ ସହିତ ନିଜକୁ ସମ୍ପୃକ୍ତ ନ କରନ୍ତୁ ।"

ଇତିମଧ୍ୟରେ ଭିତରେ ଭିତରେ ପଲିଟିକାଲ ଡିପାର୍ଟମେଣ୍ଟ ଚଳାଇଥିବା ଆଉ ଗୋଟିଏ ମସୁଧା ସର୍ଦ୍ଦାର ପଟେଲଙ୍କ ଦୃଷ୍ଟି ଏଡ଼ି ପାରିଲା ନାହିଁ । ପୂର୍ବଗଡ଼ଜାତମାନଙ୍କୁ ଏକାଠି କରି ହାଇଦ୍ରାବାଦ ସଙ୍ଗେ ଯୋଡ଼ି ଗୋଟିଏ ସ୍ୱତନ୍ତ୍ର 'ଇଉନିଟ୍' ଗଠନ କରିବାର ଭିତରି ଉଦ୍ୟମ ପଦାରେ ପଡ଼ିଗଲା । ଓଡ଼ିଶା ରାଜାମାନଙ୍କ ତରଫରୁ ଦୂତ ପଠାଯାଇ ହାଇଦ୍ରାବାଦ ସରକାରଙ୍କ ସଙ୍ଗେ ଗୁପ୍ତ ପରାମର୍ଶ ବି ଆରମ୍ଭ ହୋଇଥିଲା । ଏହା କାର୍ଯ୍ୟକାରୀ ହୋଇଥିଲେ ହାଇଦ୍ରାବାଦ ଓ ପୂର୍ବ ଗଡ଼ଜାତ ମଧ୍ୟରେ ବସ୍ତର ଗଡ଼ଜାତ ହୋଇଥାନ୍ତା ଯୋଗସୂତ୍ର । ତତ୍କାଳୀନ ଛତିଶଗଡ଼ର ପଲିଟିକାଲ ଏଜେଣ୍ଟ ମିଷ୍ଟର ଗ୍ରୁନସି ପୂର୍ବ ଗଡ଼ଜାତ ରେସିଡେଣ୍ଟଙ୍କ ସେକ୍ରେଟରୀଙ୍କ ପାଖକୁ ୧୯୪୭ ସେପଟେମ୍ବର ୧୧ ତାରିଖରେ ଯେଉଁ ଚିଠି ଲେଖିଥିଲେ ସେଥିରୁ ଏ ଉଦ୍ୟମର କିଛି କିଛି ଆଭାସ ମିଳୁଛି । ସେ ଲେଖିଥିଲେ :—

"With regard to the particular proposal that Bastar and perhaps Kanker should go in with Hyderabad to form a composite unit, I have frequently considered this possibility myself and failing the formation of an Eastern

States unit, I would be inclined to advocate this course for Bastar and Kanker and should like to sound the Ruler of Kanker, not now, but later, if and when it is clear that no Eastern States unit will form. Presumably if Hyderabad were taken on the idea they would make their own approach. Much naturally would depend upon the precise nature of the proposal and guarantees they could give."

" ବିଶେଷ କରି ବସ୍ତର ଓ ସମ୍ଭବତଃ କାଙ୍କେରକୁ ହାଇଦ୍ରାବାଦ ସହିତ ମିଶାଇ ଗୋଟିଏ ମିଳିତ ଇଉନିଟ୍ ଗଢ଼ିବାର ପ୍ରସ୍ତାବ ମୁଁ ଅନେକ ଥର ବିଚାର କରି ଅଛି । ଯଦି ପୂର୍ବ ଗଡ଼ଜାତମାନଙ୍କୁ ନେଇ ଗୋଟିଏ ଇଉନିଟ୍ ଗଢ଼ା ଯାଇ ନ ପାରେ ତେବେ ବସ୍ତର ଓ କାଙ୍କେର ପାଇଁ ଏ ଭଳି ଏକ ପ୍ରସ୍ତାବ ଗ୍ରହଣ କରିବାର ମୁଁ ପକ୍ଷପାତି । ଯଦି ପୂର୍ବ ଗଡ଼ଜାତ ଇଉନିଟ ହୋଇ ପାରିବ ନାହିଁ ବୋଲି ସ୍ପଷ୍ଟ ଜଣା ପଡ଼ିବ ତେବେ ମୁଁ କାଙ୍କେରର ରାଜାଙ୍କ ଆଗରେ ଏ କଥା ପକାଇବି । ଯଦି ହାଇଦ୍ରାବାଦକୁ ନିଆଯାଏ ତେବେ ଖୁବ୍ ସମ୍ଭବତଃ ସେମାନେ ତାଙ୍କ ନିଜ ଭିତରେ କଥାବାର୍ତ୍ତା କରି ସ୍ଥିର କରିବେ । ଅବଶ୍ୟ ସେମାନେ ଠିକ୍ କିଭଳି ପ୍ରସ୍ତାବ ଓ ଗ୍ୟାରେଣ୍ଟି ଦେବେ ତାହା ଉପରେ ଅନେକ କଥା ନିର୍ଭର କରୁଛି ।"

ସେ ପୁଣି ଲେଖିଥିଲେ :—

"I suppose a much bigger unit would not be feasible viz. Hyderabad, Eastern States and Orissa. With Hyderabad in the unit, the smaller States (which would still have to join as a unit within a unit) would not feel so afraid of Orissa."

"ମୁଁ ମନେ କରେ ହାଇଦ୍ରାବାଦ୍, ପୂର୍ବଗଡ଼ଜାତ ଏବଂ ଓଡ଼ିଶାକୁ ମିଶାଇ ଗୋଟିଏ ବଡ଼ ଇଉନିଟ୍ ଗଢ଼ିବା ସମ୍ଭବପର ହେବ ନାହିଁ । ହାଇଦ୍ରାବାଦ ଥିଲେ କ୍ଷୁଦ୍ର ଗଡ଼ଜାତମାନେ ଆଉ ଓଡ଼ିଶାକୁ ଡରନ୍ତେ ନାହିଁ । ସେମାନେ ତ ଏହି ଇଉନିଟ୍ର କ୍ଷୁଦ୍ର ଅଂଶ ରୂପେ ରହନ୍ତେ ।"

ଏ ଭଳି ଅଭିସନ୍ଧିର ସୂଚନା ପାଇ ଭାରତ ସରକାର ଖୁବ୍ ତତ୍ପରତାର ସହିତ ଅଗ୍ରସର ହୋଇ ଏ ସମସ୍ତ ପ୍ରସ୍ତାବକୁ ପଣ୍ଡ କରି ଦେଲେ ସତ, କିନ୍ତୁ ସମସ୍ତଙ୍କ ମନରେ ବର୍ତ୍ତମାନ ଧାରଣା ବଦ୍ଧମୂଳ ହୋଇଗଲା ଯେ ଏହି ରାଜା ମହାରାଜା ମାନଙ୍କୁ ମନଇଚ୍ଛା କାମ କରିବାକୁ ଛାଡ଼ିଦେଲେ ସ୍ୱାଧୀନ ଭାରତ ପକ୍ଷରେ ତାହା

ନିରାପଦ ହେବ ନାହିଁ । କିନ୍ତୁ ଉପାୟ କଣ ? ମାଲଗିରି ସେ ବାଟ ଦେଖାଇ ଦେଲା ।

ମାଲଗିରିରେ ଯେଉଁ ନାଟକ ଆରମ୍ଭ ହେଲା, ହାଇଦ୍ରାବାଦରେ ତାର ସମାପ୍ତି ଘଟିଲା ।

ମାଲଗିରି ଯେପରି ଭାବରେ ଓଡ଼ିଶାକୁ ଆସିଲା ତାହା ରାଜାମାନଙ୍କ ଭିତରେ ଗୋଟାଏ ଆଲୋଡ଼ନ ସୃଷ୍ଟି କଲା । କେତେକେ କାଳର ଦାବୀକୁ ମାନି ନେଇ ଭୁକ୍ତ ହୋଇ ରହିବା ଉଚିତ ପନ୍ଥା ବୋଲି ଧରି ନେଲାବେଳକୁ ଆଉ କେତେକେ ଓଲଟା ବାଟ ଖୋଜିଲେ । ପାଟନା ମହାରାଜା ଓ କଳାହାଣ୍ଡି ମହାରାଜା ଦ୍ୱିତୀୟ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ । ତାହାର ସ୍ପଷ୍ଟ ସୂଚନା ନିମ୍ନଲିଖିତ ଚିଠିରୁ ମିଳୁଛି ।

ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍‌ସିର ସ୍ପେଶାଲ୍ ଅଫିସର ଶ୍ରୀଯୁକ୍ତ ସତ୍ୟନାରାୟଣନ୍ ୧୯୪୭ ନଭେମ୍ବର ୨୮ ତାରିଖରେ ଭାରତ ସରକାରଙ୍କୁ ଲେଖିଲେ :—

"A contingent of Rulers are flying to Dehli to-morrow morning to confer with the Ministry of States and to place their views before the Hon'ble Minister. As I had indicated, there was a distinct cleavage between the Rulers. The revolt was led by Khairagarh who placed a note before the meeting favouring full and unconditional co-operation with the neighbouring provinces including merger of the States, if this be necessary. The other members of the Board notably Korea and Patna were against this suggestion......"

"ଦଳେରାଜା ଦେଶୀୟରାଜ୍ୟଦପ୍ତର ସହିତ ଆଲୋଚନା କରି ମାନ୍ୟବର ମନ୍ତ୍ରୀଙ୍କ ଆଗେ ତାଙ୍କ ମତାମତ ଉପସ୍ଥାପିତ କରିବା ପାଇଁ କାଲିସକାଳେ ଉଡ଼ାଜାହାଜ ଯୋଗେ ଦିଲ୍ଲୀ ଯାଉଛନ୍ତି । ମୁଁ ଆଗରୁ ସୂଚନା ଦେଇଥିଲି ଯେମାନଙ୍କ ଭିତରେ ସ୍ପଷ୍ଟ ମତଭେଦ ରହିଛି । ଖଇରାଗଡ଼ ରାଜା ବିଦ୍ରୋହ ଆରମ୍ଭ କରି ପ୍ରସ୍ତାବ ବାଢ଼ିଲେ ଯେ ପଡ଼ୋଶୀ ପ୍ରଦେଶ ସହ ବିନାସର୍ତ୍ତରେ ପୂର୍ଣ୍ଣ ସହଯୋଗ କରାଯିବା ଉଚିତ । ଦରକାର ହେଲେ ଗଡ଼ଜାତଗୁଡ଼ିକ ପ୍ରଦେଶ ସହିତ ମିଶିଯିବା ଉଚିତ । ବୋର୍ଡ଼ର ଅନ୍ୟ ସଭ୍ୟମାନେ, ବିଶେଷତଃ କୋରିଆ ଓ ପାଟନା ଏହି ପ୍ରସ୍ତାବର ବିରୋଧୀ ଥିଲେ ।"

ପୁଣି

"Some of the Rulers, I understand, left the meeting in disgust on the 27th November and many of them were of the view that each should take his own course and

decide for himself and scrap the Eastern States Union. The endeavour of Korea and Patna is a last minute endeavour to save the Union and to obtain recognition somehow or other. They, too, are conscious that if the Ministry of States is adamant they would have to bow, but are only taking a chance that their sweet persuasions might have some effect on the Ministry of States.''

"ସେହି ରାଜାମାନଙ୍କ ମଧ୍ୟରୁ କେତେକେ ବିରକ୍ତ ହୋଇ ନଭେମ୍ବର ୨୭ ତାରିଖ ସଭାରୁ ବାହାରିଗଲେ ବୋଲି ମୁଁ ଶୁଣୁଛି ଏବଂ ସେମାନଙ୍କ ମଧ୍ୟରୁ ଅନେକଙ୍କର ମତ ଯେ ପ୍ରତ୍ୟେକ ନିଜ ବାଟ ଦେଖିବେ ଏବଂ ପୂର୍ବ ଗଡ଼ଜାତ ଇଉନିୟନ କଳ୍ପନା ଛାଡ଼ିବେ । କୋରିଆ ଏବଂ ପାଟନା ଏହି ଇଉନିୟନ ପ୍ରସ୍ତାବକୁ ବଞ୍ଚାଇବାପାଇଁ ଓ ସ୍ୱୀକାର କରାଇ ନେବାପାଇଁ ଅନ୍ତିମ ଚେଷ୍ଟା କରୁଛନ୍ତି । ସେମାନେ ମଧ୍ୟ ବୁଝୁଛନ୍ତି ଯେ ଯଦି ଦେଶୀୟ ରାଜ୍ୟ-ମନ୍ତ୍ରିଦପ୍ତର ଅଟଳ ରହେ ତେବେ ସେମାନଙ୍କୁ ମଧ୍ୟ ମୁଣ୍ଡ ନୁଆଁଇବାକୁ ପଡ଼ିବ । କିନ୍ତୁ ସେମାନେ ଗୋଟାଏ ଶେଷ ଚେଷ୍ଟା କରୁଛନ୍ତି, ଯଦି ତାଙ୍କ କୁହାଃବାଲିଫଳରେ ଦେଶୀୟରାଜ୍ୟ ମନ୍ତ୍ରିଦପ୍ତର ଉପରେ କିଛି ପ୍ରଭାବ ପଡ଼ିପାରେ ।"

ପୁଣି

" Among the rulers who are joining are Patna, Kalahandi ( who has been asked to reach Delhi ) Korea, Khairagarh, Udaipur and one or two others. I understand Khairagarh sees no future for these States and the only way for their economic survival is merger with provinces even if it be at a later date.''

"ଯୋଗ ଦେଉଥିବା ରାଜାମାନଙ୍କ ମଧ୍ୟରେ ଅଛନ୍ତି ପାଟଣା, କଳାହାଣ୍ଡି ( ଏହାଙ୍କୁ ଶୀଘ୍ର ଦିଲ୍ଲୀ ଯିବାପାଇଁ କୁହାଯାଇଛି ) କୋରିଆ, ଖଇରାଗଡ଼, ଉଦୟପୁର ଏବଂ ଆଉ ଜଣେ ଦିଜଣ । ମୁଁ ଶୁଣୁଛି ଖଇରାଗଡ଼ଙ୍କ ମତରେ ଏସବୁ ଗଡ଼ଜାତର ଆଉ କୌଣସି ଆଶା ନାହିଁ ଏବଂ ଆର୍ଥିକ ଦୃଷ୍ଟିରୁ ବଞ୍ଚିରହିବା ପାଇଁ ପ୍ରଦେଶ-ମାନଙ୍କସହ ମିଶ୍ରଣ ଛଡ଼ା ସେମାନଙ୍କର ଅନ୍ୟ ଗତି ନାହିଁ । ହୁଏତ ଏହି ମିଶ୍ରଣ କିଛିକାଳ ପରେ ହୋଇପାରେ ।"

ଭାରତ ସରକାର ବୁଝିଲେ ଆଜ କାଲ ବିଳମ୍ବ କରିବା ଉଚିତ ହେବନାହିଁ । ଏ ବିଷୟରେ ଠେକ୍‌ଠୋକ୍ ନିଷ୍ପତ୍ତି ନ କଲେ ସ୍ୱାଧୀନ ଭାରତର ଏକତା ଓ ସଂହତି ପଥରେ ପଦେ ପଦେ ବାଧା ଓ ବିପଦ । ୧୯୪୭ ଡିସେମ୍ବର ୧୩ ତାରିଖରେ ସର୍ଦ୍ଦାର ପଟେଲ ଆସି କଟକରେ ପହଞ୍ଚିଲେ ଓ ରାଜା, ମହାରାଜା, ଗଭର୍ଣ୍ଣର, ମୁଖ୍ୟମନ୍ତ୍ରୀ—ସମସ୍ତଙ୍କ ସଙ୍ଗେ ସିଧାସଳଖ ଆଲୋଚନା କରି ମାତ୍ର ଦୁଇଦିନ ଭିତରେ ୨୫ ଟି ଗଡ଼ଜାତ ରାଜ୍ୟର ରାଜାମାନଙ୍କର ସ୍ୱାକ୍ଷର ପତ୍ର ଧରି ୧୫ ତାରିଖ ଦିନ ଦିଲ୍ଲୀ ଫେରିଗଲେ ।

ପ୍ରାଦେଶିକ ଦେଶୀୟରାଜ୍ୟ ପରାମର୍ଶଦାତା ବୋର୍ଡ଼ରେ ଭାଷଣ ଦେଇ ସର୍ଦ୍ଦାର ପଟେଲ ଓଡ଼ିଶା ସମ୍ପର୍କରେ କହିଥିଲେ:—

" As soon as my hands were free, I went to Orissa and called the Princes of the Eastern States together. I explained to them at length what my ideas were and how the solution that I had propounded, namely of merger in the province of Orissa was both in the interests of themselves and the people. But there would be no compulsion and they must sign only after they were convinced of the rightness of their course. They should place their signature only when they understood the nature of the document. Some of them, the smaller States, agreed after a few hours of deliberation but the bigger Rulers hesitated almost upto the end. I left Cuttack and was actually on the train preparing to leave for the aerodrome when I received a message from them that I should delay my departure for some time. I could do it indefinitely but agreed to stay on for another hour. At the end of that hour they had signed the agreement. Some people say that I compelled them to do it. This is all nonsense. The only compulsion that was exercised over them was that of events. I told them that speed was most important and that the greater the delay the more difficult would be the task of saving the States in future."

"ମୁଁ ଫୁରସତ ପାଇଲା ସଙ୍ଗେ ସଙ୍ଗେ ଓଡ଼ିଶା ଗଲି ଏବଂ ପୂର୍ବ ଗଡ଼ଜାତର ରାଜାମାନଙ୍କୁ ଏକତ୍ର କରି ମୋର ମନୋଭାବ ସେମାନଙ୍କୁ ବିସ୍ତୃତ ଭାବରେ ବୁଝାଇ ଦେଲି । ଏହିସବୁ ଗଡ଼ଜାତ ପ୍ରଦେଶ ସଙ୍ଗେ ମିଶିଗଲେ କିଭଳି ଉଭୟ ଓଡ଼ିଶା ପ୍ରଦେଶ ଓ ଏହି ଗଡ଼ଜାତ ରାଜା ଏବଂ ପ୍ରଜାଙ୍କର ହିତ ସାଧିତ ହେବ ତାହା ସେମାନଙ୍କୁ ମୁଁ ଭଲଭାବେ ବୁଝାଇ ଦେଇଥିଲି । ଏଥିପାଇଁ କୌଣସି ବାଧ୍ୟବାଧକତା ନାହିଁ । ରାଜାମାନଙ୍କର ଏହି ପନ୍ଥାର ସମୀଚୀନତା ବିଷୟରେ ହୃଦ୍‌ବୋଧ ହେଲେ ସେମାନେ ଚୁକ୍ତି ସ୍ୱାକ୍ଷର କରିବେ ବୋଲି ମଧ୍ୟ ମୁଁ ତାଙ୍କୁ ବୁଝାଇଥିଲି । ଯେଉଁସବୁ କାଗଜାତରେ ସେମାନଙ୍କୁ ଦସ୍ତଖତ ଦେବାକୁ ପଡ଼ିବ ତାର ମର୍ମ ଭଲକରି ବୁଝି ସେମାନେ ଦସ୍ତଖତ ଦେବା ଉଚିତ ବୋଲି ମଧ୍ୟ ମୁଁ ସେମାନଙ୍କୁ କହିଥିଲି । ସେମାନଙ୍କ ମଧ୍ୟରୁ କେତେକେ, ବିଶେଷରେ ଶ୍ରେଷ୍ଠ ଶ୍ରେଷ୍ଠ ଗଡ଼ଜାତ ରାଜାମାନେ ଅଳ୍ପ କେତେଘଣ୍ଟା ଆଲୋଚନା ପରେ ରାଜି ହୋଇଗଲେ କିନ୍ତୁ ବଡ଼ ବଡ଼ ରାଜାମାନେ ଶେଷପର୍ଯ୍ୟନ୍ତ ଦ୍ୱିଧା ପ୍ରକାଶକଲେ । ମୁଁ କଟକ ଛାଡ଼ି ବାହାରି ଆସିଲି ଏବଂ ରେଳରେ ବସି ଏରୋଡ୍ରୋମ ଅଭିମୁଖେ ଯାତ୍ରା କରୁଥିବା ସମୟରେ ଏହି ରାଜାମାନଙ୍କଠାରୁ ବାର୍ତ୍ତା ପାଇଲି ଯେ କିଛିକାଳ ପାଇଁ ମୋର ଯାତ୍ରା ସ୍ଥଗିତ ରଖିବା ଉଚିତ । ମୁଁ ଅନିର୍ଦ୍ଦିଷ୍ଟକାଳପାଇଁ ଏହା କରିପାରିଥାନ୍ତି, କିନ୍ତୁ ମୁଁ ଆଉ ଘଣ୍ଟାଏ ଅଧିକା ରହିବି ବୋଲି ରାଜି ହେଲି । ସେ ଘଣ୍ଟାକ ଶେଷବେଳକୁ ସେମାନେ ସମସ୍ତେ ଚୁକ୍ତିରେ ସ୍ୱାକ୍ଷର ଦେଇ ସାରିଥିଲେ । କେତେକେ କହନ୍ତି ଯେ ମୁଁ ସେମାନଙ୍କୁ ସ୍ୱାକ୍ଷର କରିବାକୁ ବାଧ୍ୟକଲି । ଏହା ସଂପୂର୍ଣ୍ଣ ବାଜେ କଥା । ସେମାନଙ୍କୁ ଯଦି କେହି ବାଧ୍ୟ କରିଥାଏ, ସେ ହେଉଛି ଘଟଣାର ଗତି । ମୁଁ ସେମାନଙ୍କୁ କହି ଦେଲି ଯେ ଯେତେ ଶୀଘ୍ର ଏ କାମ ଶେଷ ହୁଏ ତେତେ ମଙ୍ଗଳ । ବିଳମ୍ବ ହେଲେ ଏହି ସବୁ ଗଡ଼ଜାତକୁ ରକ୍ଷା କରିବା କାର୍ଯ୍ୟ ଅତି କଠିନ ହୋଇ ପଡ଼ିବ ।"

ଯେଉଁ କେତେକ ବଡ଼ ବଡ଼ ରାଜାମହାରାଜା କାଳ ଓ ଘଟଣାର ଦାବୀକୁ ମାନି ନ ପାରି ସଂସ୍ତ୍ରାକୁଳ ହେଉଥିଲେ ସେମାନେ ଏକ ଆଲୋକ ରଶ୍ମି ଦେଖିଲେ ଝଡ଼େଇକଳା ଖରସୁଆଁ ଆକାଶରେ । ସେତେବେଳକୁ ସେଠାରେ ଯେଉଁ ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହୋଇଥିଲା ତାର ଆବରଣ ତଳେ ପୂର୍ବାଞ୍ଚଳ ୟୁନିଅନ ଗଠନର ଗୋଟିଏ ଶେଷ ଚେଷ୍ଟା କରାଯାଇଥିଲା । ଭାରତ ସରକାରଙ୍କ ଗଡ଼ଜାତ ମିଶ୍ରଣ ନିଷ୍ପତ୍ତିକୁ ଅକାମୀ କରିଦେବାର ପନ୍ଥା କଣ ସେ ବିଷୟରେ ସାର୍ ତେଜବାହାଦୁର ସାପ୍ରୁ, ସାର ଆଲାଦି କୃଷ୍ଣସ୍ୱାମୀ ଆୟାଙ୍ଗାରଙ୍କ ଭଳି ବିଶିଷ୍ଟ ଆଇନଜ୍ଞମାନଙ୍କର ମତ ସଂଗ୍ରହ କରାଯାଇଥିଲା । ସେ ଅଞ୍ଚଳର ଆଦିବାସୀମାନଙ୍କୁ କରିପ୍ରବୃତ୍ତ କରିବା

ଉଦ୍ଦେଶ୍ୟରେ ନାନାପ୍ରକାର ଚେଷ୍ଟା କରଯାଇ ଶ୍ରୀ ଜୟପାଳ ସିଂହଙ୍କ ଝାଡ଼ଖଣ୍ଡ ପ୍ରଦେଶ ଗଠନ ଦାବୀରେ ସମସ୍ତ ପ୍ରକାର ସାହାଯ୍ୟ ସହାନୁଭୂତିର ଭରସା ଦିଆଯାଇଥିଲା । ଓଡ଼ିଶା ବିରୁଦ୍ଧରେ ଜନମତ ସୃଷ୍ଟିକରିବା ଉଦ୍ଦେଶ୍ୟରେ ଯେଉଁ ବ୍ୟାପକ ଆୟୋଜନ କରଯାଇଥିଲା ସେଥିରେ ଶ୍ରୀ ଜୟପାଳ ସିଂହ ମୁଖ୍ୟ ଭାଗ ନେଇଥିଲେ । ଷଢ଼େଇକଳା ଖରସୂଆଁରେ ଓଡ଼ିଶା ସରକାର ଘୋର ଦମନନୀତି ଚଳାଉଛନ୍ତି ବୋଲି ଗୋଟିଏ ଅପପ୍ରଚାର ଆରମ୍ଭ କରି ସେହି ଅନୁସାରେ ସ୍ଥାନୀୟ ଲୋକମତ ସଂଗଠିତ କରିବା ଦାବୀରେ ଗୋଟିଏ ଅଭିଯାନ ଚାଲିଲା । କୁମାର ଶ୍ରୀ ବିଜୟ ପ୍ରତାପ ଶ୍ରୀ ଜୟପାଳ ସିଂହଙ୍କୁ ଲେଖିଲେ :—

"It is reported that the Orissa authorities in the States are using their influence and also threatening people against any move for amalgamation with Bihar. They are also offering inducement to people to support the cause of Orissa. There has been entirely onesided show in the States and the people are under terror to act against Orissa interests. This cannot go on if an impartial enquiry is needed."

"ଖବର ମିଳୁଛି ଯେ ଏହି ଗଡ଼ଜାତରେ ଓଡ଼ିଶା କର୍ତ୍ତୃପକ୍ଷ ଲୋକେ ଯେପରି ବିହାର ସଙ୍ଗେ ମିଶ୍ରଣ ପାଇଁ ଆନ୍ଦୋଳନ ନ କରନ୍ତି ସେଥିପାଇଁ ତାଙ୍କର ପ୍ରଭାବ ପ୍ରୟୋଗ କରୁଛନ୍ତି ଓ ଲୋକଙ୍କୁ ଧମକଚମକ ଦେଉଛନ୍ତି । ଓଡ଼ିଶା ପକ୍ଷ ସମର୍ଥନ କରିବା ପାଇଁ ସେମାନେ ଲୋକଙ୍କୁ ନାନା ପ୍ରଲୋଭନ ଦେଖାଉଛନ୍ତି । ଏହି ଗଡ଼ଜାତ ମାନଙ୍କରେ ସମ୍ପୂର୍ଣ୍ଣରୂପେ ଏକତରଫା କାମ ଚାଲିଛି ଏବଂ ଲୋକେ ଓଡ଼ିଶା ବିରୋଧରେ କାମ କରିବାକୁ ଭୟ କରୁଛନ୍ତି । ଯଦି ନିରପେକ୍ଷ ତଦନ୍ତ ହେବାର କଥା, ତେବେ ଏହା ଚାଲି ନ ପାରେ ।"

ସେ ପୁଣି ଲେଖିଲେ :—

"You are meeting your workers tomorrow at Ranchi whom you may have to instruct on the question and the line and nature of propaganda to be undertaken by them. I suggest to you to kindly depute to Saraikella and Kharswan, at least one dozen for each State of more capable and efficient workers. They will be required to stay on at Saraikella and Kharswan till the work of the Tribunal is over. Mind

that Saraikella and Kharswan will be the testing ground and the acid-test for the entire Jharkhand movement and our further success will greatly depend upon the results here.''

"ଆସନ୍ତାକାଲ ତମେ ତମ କର୍ମୀମାନଙ୍କ ସହିତ ରାଞ୍ଚିଠାରେ ମିଳିତ ହେଉଛ । ସେଠାରେ ସେମାନଙ୍କୁ ଏ ବିଷୟରେ କି ବାଟରେ ଓ ରୀତିରେ ପ୍ରଚାର ଚଳାଇବାକୁ ହେବ ସେ ସଂପର୍କରେ ନିର୍ଦ୍ଦେଶ ଦେବାକୁ ପଡ଼ିପାରେ । ମୋର ପ୍ରସ୍ତାବ ଯେ ତମେ ଷଢ଼େଇକଳା ଓ ଖରସୁଆଁ ପ୍ରତ୍ୟେକ ରାଜ୍ୟକୁ ୧୨ ଜଣ ଲେଖାଏଁ ଭଲ ବଛା କର୍ମୀ ପଠାଅ । ଟ୍ରିବ୍ୟୁନାଲ କାମ ଶେଷ ହେବା ପର୍ଯ୍ୟନ୍ତ ସେମାନେ ଏଠାରେ ରହିବେ । ମନେରଖ ଷଢ଼େଇକଳା ଖରସୁଆଁ ହେଉଛି ପରୀକ୍ଷାଭୂମି ଏବଂ ସମଗ୍ର ଝାଡ଼ଖଣ୍ଡ ଆନ୍ଦୋଳନର ଅସଲ ପରୀକ୍ଷା ଏହିଠାରେ ହେବ ଏବଂ ଏଠାର ଜୟପରାଜୟ ଉପରେ ଆମର ପରବର୍ତ୍ତୀ ସଫଳତା ବହୁ ପରିମାଣରେ ନିର୍ଭର କରିବ ।''

ପୁଣି

"I would also suggest that in a meeting at Tatanagar on the 18th instant you may also indicate your views there, so that the people may know their stand in the Tribunal. I would meet you here on the 17th and further discuss the question."

"ମୁଁ ଆଉମଧ୍ୟ ପ୍ରସ୍ତାବ କରୁଛି ଯେ ଟାଟାନଗରଠାରେ ଆସନ୍ତା ୧୮ ତାରିଖ ଦିନ ସାଧାରଣ ସଭାରେ ତମେ ଏ ସଂପର୍କରେ ତମ ମତାମତ ଜଣାଇଦିଅ ଯେପରି କି ଲୋକେ ଟ୍ରିବୁ୍ୟନାଲ ଆଗେ ଆମେ କି ଦାବୀ କରିବା ତାହା ସ୍ପଷ୍ଟଭାବରେ ଜାଣିପାରିବେ । ମୁଁ ତମ ସଙ୍ଗେ ୧୭ ତାରିଖ ଦିନ ସାକ୍ଷାତ କରି ପୁଣି ଏ ବିଷୟରେ ଆଲୋଚନା କରିବି ।"

୧୯୪୮ ଜାନୁଆରୀ ୧୧ ତାରିଖଠାରୁ ୧୮ ତାରିଖ ମଧ୍ୟରେ ଆଦିବାସୀ ନେତା ଶ୍ରୀ ଜୟପାଳ ସିଂହ ଗୁଲିବାସା, ରାଞ୍ଚି ଓ ଜାମସେଦପୁରଠାରେ ଯେଉଁ ଭାଷଣମାନ ଦେଇଥିଲେ ସେଥିରୁ ସେମାନଙ୍କର ଓଡ଼ିଶାବିରୋଧୀ କାର୍ଯ୍ୟକଳାପର ସ୍ପଷ୍ଟ ସୂଚନା ମିଳୁଛି । ଛୋଟନାଗପୁର ଗଡ଼ଜାତମଣ୍ଡଳ ଭିତରୁ ଯେଉଁ ରାଜ୍ୟଗୁଡ଼ିକ ଓଡ଼ିଶାରେ ମିଶିଯାଇଥିଲେ, ଯଥା—ବଣେଇ, ବାମଣ୍ଡା, ଗାଙ୍ଗପୁର, ଷଢ଼େଇକଳା ଓ ଖରସୁଆଁ, ସେମାନଙ୍କୁ ଓଡ଼ିଶା କବଳରୁ ଉଦ୍ଧାର କରି ବିହାର ସହିତ ମିଶାଇ ଦେବାକୁ ସେ ଆହ୍ୱାନ କରିଥିଲେ ।

ଖୁଲିବସା ସମ୍ମିଳନୀରେ ସେ କହିଥିଲେ :—

" I want to tell you plainly that all the Rulers of the ten Chhotanagpur States want to come back to Chhotanagpur. I say " to come back ". They were with us before and they belong to us. We will not allow them to go outside Chhotanagpur. Geographically, they belong to Chhotanagpur. The people of these ten States are not Oriya-speaking, and the subjects have also expressed, in no uncertain terms, their determination to get back to Chhota Nagpur. A plebiscite will corroborate what I say. I know that the Greater Orissa leaders have lost no time in making full use of their present opportunity to victimise the Rulers of the Chhotanagpur States, and, I want to warn them that the people of Jharkhand and Bihar proper will not rest till the invader has been driven out of the Chhotanagpur States. xxx"

"ତୁମମାନଙ୍କୁ ମୁଁ ସଫା କହିଦେବାକୁ ଚାହେଁ ଯେ ଦଶୋଟି ଛୋଟନାଗପୁର ଗଡ଼ଜାତର ରାଜା ଛୋଟନାଗପୁରକୁ ଫେରି ଆସିବାକୁ ଚାହାନ୍ତି । ମୁଁ "ଫେରିଆସିବା" କଥା କହୁଛି । ସେମାନେ ଆଗରୁ ଆମ ସାଥିରେ ଥିଲେ ଏବଂ ସେମାନେ ଆମ ଭିତରର । ଛୋଟନାଗପୁର ବାହାରକୁ ଆମେ ସେମାନଙ୍କୁ ଛାଡ଼ିବୁ ନାହିଁ । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ସେମାନେ ଛୋଟନାଗପୁରର । ଏହି ଦଶୋଟି ଗଡ଼ଜାତର ଲୋକ ଓଡ଼ିଆଭାଷୀ ନୁହନ୍ତି ଏବଂ ସେଠାର ପ୍ରଜା ଛୋଟନାଗପୁରକୁ ଫେରି ଆସିବା ପାଇଁ ସେମାନଙ୍କର ସଂକଳ୍ପ ସ୍ପଷ୍ଟଭାବରେ ଜଣାଇ ଦେଇଛନ୍ତି । ଗଣଭୋଟ ହେଲେ ଏହାହିଁ ପ୍ରମାଣିତ ହେବ । ବୃହତ୍ତର ଓଡ଼ିଶାର ନେତାମାନେ ଏହି ସୁଯୋଗରେ ଛୋଟନାଗପୁର ଗଡ଼ଜାତର ରାଜାମାନଙ୍କୁ ଖୁବ୍ ହଇରାଣ କରୁଛନ୍ତି । ମୁଁ ସେମାନଙ୍କୁ ସାବଧାନ କରାଇ ଦେଉଛି ଯେ ଝାଡ଼ଖଣ୍ଡ ଓ ଖୋଦ ବିହାରର ଲୋକେ ଛୋଟନାଗପୁର ଗଡ଼ଜାତମାନଙ୍କରୁ ଆକ୍ରମଣକାରୀଙ୍କୁ ନ ତଡ଼ିବା ଯାଏ ଥୟ ହେବେ ନାହିଁ ।"

ତା ୧୪-୧-୪୮ ରେ ରାଞ୍ଚିରେ:—

"The Greater Orissa leaders have no right to the Chhotanagpur States, but they have lost no time in

making full use of their presence, even as an interim arrangement, to victimise the rulers and the people. We have to act constitutionally, to negotiate with the Government of India for the merger of the ten Chhotanagpur States to the Bihar Administration, but, at the same time, we must not leave alone the rulers and their subjects to the mercy of the Orissa authorities. We must go to their help, to their rescue. We must send to these States concrete proof of the welcome that is waiting for them for their return to the Bihar Administration. We must tell them clearly that all the people of Bihar proper and certainly Jharkhandis are determined to make every sacrifice, so that not an inch of Chhotanagpur goes elsewhere. I do not want that we should pass empty resolutions. We must throw out the Orissa invaders and must not rest till the Chhotanagpur States are once again back in our fold. I, therefore. appeal for volunteers for this work. I want volunteers for the Life and Liberty of Jharkhand. The Adibasis of Kharswan have given their lives for our Life and Liberty; they have made the supreme sacrifice; they have shown us the way. Let us take up the challenge of the Greater Orissa leaders for our territory."

୧୯୪୮ ଜାନୁଆରୀ ମାସ ୧୪ ତାରିଖରେ ରାଞ୍ଚିଠାରେ ଅନୁଷ୍ଠିତ ଆଦିବାସୀ ମେଳାରେ ନିଖିଳଭାରତ ଆଦିବାସୀ ମହାସଭାର ସଭାପତି ଶ୍ରୀ ଜୟପାଲ ସିଂହଙ୍କ ପ୍ରଦତ୍ତ ଭାଷଣର କେତେକାଂଶ:—

"ବୃହତ୍ତର ଉତ୍କଳର ନେତାମାନଙ୍କର ଛୋଟନାଗପୁର ଗଡ଼ଜାତ-ମଣ୍ଡଳ ଉପରେ କୌଣସି ଅଧିକାର ନାହିଁ । କିନ୍ତୁ ରାଜା ଓ ପ୍ରଜାଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ଅନ୍ତଃବର୍ତ୍ତୀ କାଳୀନ କର୍ତ୍ତୃପକ୍ଷ ହେଲେ ମଧ୍ୟ ସେମାନେ ଯେତେ ସମୟ ଏହି ଗଡ଼ଜାତ ଗୁଡ଼ିକ ଦଖଲ କରି ରହିଛନ୍ତି, ସେହି ସମୟତକର ସେମାନେ ପୂରା ସୁଯୋଗ ନେବାକୁ ଚାହାନ୍ତି । ମାତ୍ର ଆମକୁ ବୈଧାନିକ ଉପାୟରେ କାମ କରିବାକୁ ହେବ । ଛୋଟନାଗପୁର ଗଡ଼ଜାତମଣ୍ଡଳକୁ ବିହାର ଶାସନର ଅନ୍ତର୍ଭୁକ୍ତ

କରିବା ନିମନ୍ତେ ଆମେ ଭାରତ ସରକାରଙ୍କ ସଙ୍ଗେ ଆଲୋଚନା କରିବା, କିନ୍ତୁ ତା ସଙ୍ଗେ ସଙ୍ଗେ ଆମେ ଏହି ରାଜାମାନଙ୍କୁ ଓ ସେମାନଙ୍କ ପ୍ରଜାମାନଙ୍କୁ ଓଡ଼ିଶା ସରକାରଙ୍କ ଦୟା ଉପରେ ଛାଡ଼ିଦେଇ ନ ପାରୁ । ଆମେ ସେମାନଙ୍କୁ ଯେ କୌଣସିମତେ ସାହାଯ୍ୟ କରିବା । ଏହି ଗଡ଼ଜାତ ରାଜ୍ୟଗୁଡ଼ିକ ବିହାର ଶାସନର ଅନ୍ତର୍ଭୁକ୍ତ ହେଲେ ସେମାନଙ୍କୁ ହାର୍ଦ୍ଦିକ ସ୍ୱାଗତ କରାଯିବ—ଆମକୁ ସେମାନଙ୍କୁ ଏଥିର ନିର୍ଦ୍ଦିଷ୍ଟ ପ୍ରମାଣ ଦେଇଦେବା ଉଚିତ । ଆମେ ସେମାନଙ୍କୁ ସ୍ପଷ୍ଟଭାବରେ ଜଣାଇ ଦେବା ଉଚିତ ଯେ ବିହାରର ଜନସାଧାରଣ ଏବଂ ଝାଡ଼ଖଣ୍ଡୀମାନେ କୌଣସିମତେ ଛୋଟନାଗପୁରର ଇଞ୍ଚେ ଭୂମି ଅନ୍ୟ କେଉଁଠିକି ଛାଡ଼ିଦେବାକୁ ପ୍ରସ୍ତୁତ ନୁହନ୍ତି । ମୁଁ ଚାହେଁନା ଯେ ଆମେ ଏଠି ଖାଲି ଫମ୍ପା ପ୍ରସ୍ତାବମାନ ଗ୍ରହଣ କରି ଚାଲିଯିବୁ । ଓଡ଼ିଶା ଆକ୍ରମଣକାରୀଙ୍କୁ ଯେ କୌଣସିମତେ ବିତାଡ଼ିତ କରିବାକୁ ହେବ ଏବଂ ଛୋଟନାଗପୁର ଗଡ଼ଜାତମଣ୍ଡଳ ଆମ ଅକ୍ତିଆରକୁ ଫେରି ନ ଆସିବା ପର୍ଯ୍ୟନ୍ତ ଆମର ବିଶ୍ରାମ ନାହିଁ । ଏହି କାମ ପାଇଁ ମୁଁ ସ୍ୱେଚ୍ଛାସେବକ ଚାହେଁ । ଝାଡ଼ଖଣ୍ଡର ଜୀବନ ଓ ମୁକ୍ତି ପାଇଁ ମୁଁ ସ୍ୱେଚ୍ଛାସେବକ ଚାହେଁ । ଖରସୂଆଁର ଆଦିବାସୀମାନେ ଆମ ଜୀବନ ଓ ମୁକ୍ତି ପାଇଁ ସେମାନଙ୍କ ଜୀବନ ଦେଇଛନ୍ତି । ସେମାନେ ମରଣକୁ ବରଣ କରିଛନ୍ତି; ସେମାନେ ଆମକୁ ବାଟ ଦେଖାଇଛନ୍ତି । ଆମ ରାଜ୍ୟଗୁଡ଼ିକୁ ନେଇଯିବାକୁ ବୃହତ୍ତର ଉତ୍କଳର ନେତାମାନେ ଯେଉଁ ଆହ୍ୱାନ ଦେଇଛନ୍ତି ଆମ୍ଭମାନଙ୍କୁ ସେ ଆହ୍ୱାନର ଉତ୍ତର ଦେବାକୁ ହେବ ।”

୧୯୪୮ ଜାନୁଆରୀ ୧୮ ତାରିଖରେ ଜାମସେଦପୁରଠାରେ ଅନୁଷ୍ଠିତ ଝାଡ଼ଖଣ୍ଡ ସମ୍ମିଳନୀରେ ଭାଷଣ ଦେଇ ସେ କହିଥିଲେ :—

“As you are aware, I have been in constant touch with the rulers and the people's organisations of the Chhota nagpur States, and, I can tell you with full confidence that they are determined to return to the Province of Bihar to regain their old status quo. I know what I am talking about. A plebiscite will corroborate what I say. Now it is our duty to give every help we can to the people of the Chhotanagpur States because the Orissa authorities are taking full advantage of their occupation, even as an interim arrangement.”

"It has appeared in the Press that a Commission will soon be visiting the Chhotanagpur States to decide the question of their merger to provinces. It is most essential that neutral administration should be immediately appointed and the people of the States given full facilities to express their views. Orissa authorities must clear out of States like Seraikella and Kharswan where, already, they are victimising the people into false assertions. There must be absolute fair play; otherwise, the plebiscite will be meaningless. The decision of the people must not be taken at the point of bayonet. There must be full freedom for their views."

"ତୁମ୍ଭେମାନେ ଜାଣ ଯେ ମୁଁ ଛୋଟନାଗପୁର ଦେଶୀୟ ରାଜ୍ୟମଣ୍ଡଳ ଭିତରେ ରହୁଥିବା ପ୍ରଜାଙ୍କ ଅନୁଷ୍ଠାନ ଓ ରାଜାମାନଙ୍କ ସଙ୍ଗେ ସଦାସର୍ବଦା ସମ୍ପର୍କ ରଖିଛି; ମୁଁ ଦୃଢ଼ତାର ସହିତ କହିପାରେ ଯେ ସେମାନେ ନିଜର ପୂର୍ବ କ୍ଷମତା ଓ ଅଧିକାର ବଜାଏ ରଖିବା ନିମନ୍ତେ ବିହାରକୁ ଫେରି ଆସିବାକୁ ଚାହାଁନ୍ତି । ମୁଁ ଯାହା କହୁଛି ସେ ବିଷୟରେ ମୋର ସ୍ପଷ୍ଟ ଧାରଣା ରହିଛି । ମୁଁ ଯାହା କହୁଛି ଗଣଭୋଟଦ୍ୱାରା ତାହା ପ୍ରମାଣିତ ହୋଇଯିବ । ଛୋଟ ନାଗପୁର ଗଡ଼ଜାତମଣ୍ଡଳର ଲୋକଙ୍କୁ ସବୁମତେ ସାହାଯ୍ୟ କରିବା ବର୍ତ୍ତମାନ ଆମର ଏକାନ୍ତ କର୍ତ୍ତବ୍ୟ, କାରଣ ଓଡ଼ିଶା କର୍ତ୍ତୃପକ୍ଷ ଅନ୍ତଃବର୍ତ୍ତୀକାଳୀନ ଶାସକ ହେଲେ ମଧ୍ୟ ଯେଉଁ ଦଖଲ ଅଧିକାର ପାଇଛନ୍ତି ତାର ପୂରା ଉପଯୋଗ କରୁଛନ୍ତି ।"

"ଖବର କାଗଜରେ ବାହାରିଛି ଯେ ଛୋଟନାଗପୁର ଗଡ଼ଜାତମଣ୍ଡଳ କେଉଁ ପ୍ରଦେଶ ସଙ୍ଗେ ରହିବେ ତାହା ନିଷ୍ପତ୍ତି କରିବା ନିମନ୍ତେ ଗୋଟିଏ କମିଶନ ନିକଟରେ ଛୋଟନାଗପୁର ଗଡ଼ଜାତମଣ୍ଡଳ ପରିଦର୍ଶନ କରିବେ, ତେଣୁ ଗୋଟିଏ ନିରପେକ୍ଷ କର୍ତ୍ତୃପକ୍ଷଙ୍କ ଉପରେ ଏହି ଗଡ଼ଜାତମଣ୍ଡଳର ଶାସନ ତୁରନ୍ତ ଦେଇ ଦିଆଯିବା ଉଚିତ ଏବଂ ଲୋକେ ଯେପରି ନିର୍ଭୟରେ ସେମାନଙ୍କର ସ୍ୱାଧୀନମତ ବ୍ୟକ୍ତ କରିପାରିବେ ସେଥିପାଇଁ ସେମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବା ଉଚିତ । ସରାଇକଲା ଓ ଖରସୁଆଁ ପରି ଗଡ଼ଜାତ ମାନଙ୍କରୁ ଓଡ଼ିଶା କର୍ତ୍ତୃପକ୍ଷ ତୁରନ୍ତ ଅପସରି ଯିବା ନିତାନ୍ତ ଆବଶ୍ୟକ । କାରଣ ସେମାନେ ମିଛକଥା କହିବାକୁ ଲୋକଙ୍କ ଉପରେ ଜୁଲମ ଚଳାଇଛନ୍ତି, ନିରପେକ୍ଷ ଭାବରେ ଗଣଭୋଟ ନଆଯିବା ନିତାନ୍ତ ଆବଶ୍ୟକ । ତାହା ନ ହେଲେ ଏ ଗଣଭୋଟର କୌଣସି ଅର୍ଥ ରହିବ ନାହିଁ । ବନ୍ଧୁକ ସଙ୍ଗୀନ୍ମୁନରେ କଦାପି ଲୋକମତ ସଂଗ୍ରହ କରାଯାଇ ନପାରେ । ମତ ପ୍ରକାଶ କରିବା ପାଇଁ ସେମାନଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିବା ଉଚିତ ।"

ତେଣେ ଶ୍ରୀଯୁକ୍ତ ମହତାବ କନକା ଓ କେନ୍ଦୁଝରଙ୍କ ସାହାଯ୍ୟରେ ଷଡ଼େଇକଳା ରାଜାସାହେବଙ୍କୁ ଯେତେ ବୁଝାଇବାକୁ ଚେଷ୍ଟାକଲେ ବ ସେ ଧରା ଛୁଆଁ ଦେଲେ ନାହିଁ । ୧୯୪୮ ମାର୍ଚ୍ଚ ୩ ତାରଖରେ ସେ ଶ୍ରୀଯୁକ୍ତ ମହତାବଙ୍କ ପାଖକୁ ଲେଖିଲେ:—

"I again reiterate my views that I like to be away from politics and an understanding with other rulers than me would perhaps be more fruitful for your purpose......... Political parleys have unpleasant consequences now as before. I, therefore, would implore you to spare me from them in future in the interest of mutual regard."

"ମୁଁ ପୁଣିଥରେ ଜଣାଇ ଦେଉଛି ଯେ ମୁଁ ରାଜନୀତିରୁ ଅଲଗା ହୋଇଯିବାକୁ ଚାହେଁ । ତେଣୁ ଆପଣଙ୍କ ଉଦ୍ଦେଶ୍ୟସିଦ୍ଧି ପାଇଁ ମତେ ଛାଡ଼ ଅନ୍ୟ ରାଜାମାନଙ୍କ ସହିତ ଗୋଟାଏ ବୁଝାମଣା କରାଇନେଲେ ଅଧିକ ଫଳପ୍ରଦ ହେବ······ ଅତୀତ ପରି ବର୍ତ୍ତମାନ ମଧ୍ୟ ଏ ଭଳି ରାଜନୀତିକ ଆଲୋଚନାର ଫଳ ଭଲ ହେବନାହିଁ । ତେଣୁ ଆମ ପାରସ୍ପରିକ ସମ୍ମାନ ଦୃଷ୍ଟିରୁ ଭବିଷ୍ୟତରେ ମୋତେ ଏହା ଭିତରକୁ ଆଉ ନ ଟାଣିବାକୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ।"

କିନ୍ତୁ ଏଥିରେ ନ ଭୁଲି ଦିଲ୍ଲୀଯାଇ ଶ୍ରୀଯୁକ୍ତ ମହତାବ ପାଟଣା ମହାରାଜା ଓ ଷଡ଼େଇକଳା ରାଜାସାହେବଙ୍କ ସଙ୍ଗେ କଥାବାର୍ତ୍ତା କରି ୧୯୪୮ ଏପ୍ରିଲ ୨୦ ତାରିଖରେ ସେମାନଙ୍କ ପାଖକୁ ଲେଖିଲେ:—

"Whatever suggestions you and I have to make, we may send them to the proper quarters; but I am very sorry to say that a movement is sought to be started in order to unsettle the present position.

ଆପଣଙ୍କର ଓ ମୋର ଯଦି କିଛି ପ୍ରସ୍ତାବ ଥାଏ ତାହା ଆମେ ଉପଯୁକ୍ତ ସ୍ଥାନକୁ ପଠାଇବା ଉଚିତ । କିନ୍ତୁ ମୋର ଦୁଃଖ ଯେ ବର୍ତ୍ତମାନ ଅବସ୍ଥାକୁ ଓଲଟ-ପାଲଟ କରିଦେବା ପାଇଁ ଗୋଟିଏ ଆନ୍ଦୋଳନର ସୂତ୍ରପାତ ହେଉଛି ।"
ଶେଷରେ ପୁଣି ଅନୁରୋଧ କରିଥିଲେ:—

"I shall be much obliged if you kindly keep aloof from any such movement in the States.

"ଗଡ଼ଜାତରେ ଏଭଳି କୌଣସି ଆନ୍ଦୋଳନରୁ ଆପଣ ଅନୁଗ୍ରହ କରି ଅଲଗା ହୋଇଗଲେ ବାଧିତ ହେବ ।"

ଠିକ୍ ସେହିକବେଳେ ଭିତରେ ଭିତରେ ଅନେକ କଥା ଘଟିଯାଉଥିଲା । ୧୯୪୮ ଅପ୍ରେଲ ୧୯ ତାରିଖରେ ଷରେଇକଳା ପଟାୟତ ସାହେବ ଶ୍ରୀ ଜୟଦେବ ଠାକୁରଙ୍କ ନିକଟକୁ ଲେଖିଲେ:—

" OUR PREFERENCE IS FOR BIHAR SO THAT WE CAN LEAD THE OTHER STATES, IF WE ARE OUT OF THE CLUTCHES OF ORISSA."

"ଆମେ ବରଂ ବିହାରକୁ ଯିବା । ଥରେ ଓଡ଼ିଶା କବଳରୁ ମୁକ୍ତହେଲେ ଆମେ ଅନ୍ୟ ଗଡ଼ଜାତମାନଙ୍କୁ ନେତୃତ୍ୱ ଦେଇପାରିବୁ ।"

ସେହି ଚିଠିର ଆଦ୍ୟ ଭାଗରେ ଉଲ୍ଲେଖ ଥିଲା:—

" Delhi seems to respond to our appeals and prospects are bright that we may after all get the Prajaraj of our dreams not polluted Orissa Raj Prajaraj under the hegemony of Lord Jagannath of Cuttack Sahar........."

"ଦିଲ୍ଲୀ ଆମ ନିବେଦନରେ ଟିକିଏ ତତ୍ପରତା ଦେଖାଉଛି । ଆମେ ଯେଉଁ ଧରଣର ପ୍ରଜାରାଜ କଳ୍ପନା କରୁଛୁ ପରିଶେଷରେ ତାହା ମିଳିବ ବୋଲି ଦୃଢ଼ ଆଶା ରହିଛି । ଓଡ଼ିଶା ରାଜ ଅଧୀନରେ କଟକ ସହରର ଜଗନ୍ନାଥ ମହାପ୍ରଭୁଙ୍କ ବାହୁ ଛାୟାତଳେ ଦୂଷିତ ପ୍ରଜାରାଜ୍ୟରେ ଆମେ ରହିବୁ ନାହିଁ ।"

ତା ୪।୪।୪୮ରେ ଷରେଇକଳା ରାଜା ସାହେବ କୁମାର ବିଜୟ ପ୍ରତାପଙ୍କୁ ଲେଖିଲେ:—

Secret

Camp—Patiala House, New Delhi
SARAIKELLA
DATED The 14th April, 1948.

My dear Majhiabhaiee,

You got a cheque for Rs.24,800/- from the Raja Saheb of Korea. Certain portion of this amount will have to be spent for the movement. Therefore, please issue a cheque for Rs.10,000/- (Rupees Ten thousand) in favour of Mr. M. S. Mahanty for the work. Mr. Mahanty will see you in this connection with this letter. Poti and myself have consulted on this.



Secret

Camp. Patiala House, New Delhi.

SERAIKELLA (56)

DATED The 4th April 1948

My dear Majithiasahib

You got a cheque for Rs 24,000/- from the Raja Sahib of Kona. Certain portion of this amount will have to be spent for the movement. Therefore please issue a cheque for Rs 10,000/- (Rupees Ten thousand) in favour of Mr. M. S. Mahanty for the work. Mr Mahanti will see you in this connection with this letter. Both myself have consulted on case.

We are all doing well. Hope you are well. Tribunal is visiting Seraikella very soon & you should go ~~personally~~ affectionately without delay.

A Singh

Kumar
Bijoypratap Singh Deo
8/1, Camac St
Calcutta

We are all doing well. Hope you are well. Tribunal is visiting Saraikella very soon and you should go to Saraikella without delay.

Yours affeetionately,
Sd/- A. P. Singh

Kumar
Bijoypratap Singh Deo
3/1, Camac St.
Calcutta.

ପ୍ରିୟ ମଣ୍ଟିଆ ଭାଇ,

ଆପଣ କୋରିଆ ରାଜା ସାହେବଙ୍କଠାରୁ ୨୪ ହଜାର ୮ ଶହ ଟଙ୍କାର ଗୋଟିଏ ଚେକ୍ ପାଇଥିବେ । ଏହି ଟଙ୍କାର କେତେକାଂଶ ଆନ୍ଦୋଳନ ପାଇଁ ଖର୍ଚ୍ଚ କରିବାକୁ ହେବ । ଏହି କାମପାଇଁ ଦଶହଜାର ଟଙ୍କାର ଗୋଟିଏ ଚେକ୍ ଶ୍ରୀ ଏମ୍. ଏସ୍. ମହାନ୍ତିଙ୍କ ନାମରେ କାଟି ଦେବେ । ଏହି ପତ୍ର ନେଇ ଶ୍ରୀ ମହାନ୍ତି ଆପଣଙ୍କ ସଙ୍ଗେ ସାକ୍ଷାତ କରିବେ । ପିତା ଓ ମୁଁ ଏ ବିଷୟରେ କଥାବାର୍ତ୍ତା କରିଛୁ ।

ଟ୍ରିବ୍ୟୁନାଲ୍ ଖୁବ୍ ଶୀଘ୍ର ସରେଇକଳା ପରିଦର୍ଶନ କରିବାକୁ ଆସିବେ । ଆପଣ ଅବିଳମ୍ବେ ସରେଇକଳା ଚାଲିଯାଆନ୍ତୁ ।

| | |
|---|---|
| କୁମାର | ଆପଣଙ୍କର |
| ବିଜୟ ପ୍ରତାପସିଂହ | ସ୍ନେହର |
| ୩।୧ କାମାକ ଷ୍ଟ୍ରିଟ | ସ୍ୱା-ଏ. ପି. ସିଂହ |
| କଲିକତା | |

ଇଣ୍ଡିଅନର କଲିକତା ଅଫିସ ଖାନତଲାସ କରି ଯେଉଁ କାଗଜପତ୍ର ସରକାରଙ୍କର ହସ୍ତଗତ ହେଲା ସେଥିରୁ ଷଡ଼ଯନ୍ତ୍ରର ସମସ୍ତ ରହସ୍ୟ ଜଣା ପଡ଼ିଗଲା । ଲକ୍ଷ ଲକ୍ଷ ଟଙ୍କା ସଂଗ୍ରହ କରି ସ୍ୱତନ୍ତ୍ରମତ ଗୋଟାଏ ସଂଗଠନ ଗଢ଼ି ଓଡ଼ିଶାର ଚାରିଆଡ଼େ ବେତନ ଦେଇ ଲୋକ ନିଯୁକ୍ତ କରି ଓଡ଼ିଶା ସରକାରଙ୍କୁ କାବୁ କରି ଦେବାପାଇଁ ଭିତରେ ଭିତରେ ଯେଉଁ ଅଭିସନ୍ଧି ଚାଲିଥିଲା ତାହା ସେହି ସମୟରେ ଜଣା ନ ପଡ଼ିଥିଲେ ପରିସ୍ଥିତି ଯେ କି ଆକାର ଧାରଣ କରିଥାନ୍ତା ତାହା ଅନୁମାନ କରିହେବ ନାହିଁ । ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେ କେତେ କର୍ମୀ ନିଯୁକ୍ତ ହୋଇଛନ୍ତି ଓ କେଉଁଠି କେତେଟା ସଭା ସମିତି ଡକାଯାଇ ଓଡ଼ିଶା ବିରୋଧୀ କାର୍ଯ୍ୟ କିପରି କେତେଦୂର ଅଗ୍ରସର ହେଲା ତାହାର ମଧ୍ୟ ବିବରଣୀ ଏ

କାଗଜମାନଙ୍କରୁ ମିଳୁଛି । କେତେକ ରଜା ମହାରଜାମାନେ ବ କର୍ମୀହିସାବରେ ନାମ ଲେଖାଇଥିବାର ପ୍ରମାଣ ରହିଛି । ଲକ୍ଷେ ଷାଠିଏ ହଜାର ଟଙ୍କାର ଗୋଟାଏ ବଜେଟ ପ୍ରସ୍ତୁତ କରଯାଇ କର୍ମୀମାନଙ୍କର ମାସିକ ବେତନ, ହାତଖର୍ଚ୍ଚ, ଅଫିସଖର୍ଚ୍ଚ, ସବୁ କଡାକଡା କର ଖଞ୍ଜାଯାଇଛି । ତାହାର ଗୋଟାଏ ପୂର୍ବ ହିସାବ ୧୯୪୮ ଜୁଲାଇ ୧୨ ତାରଖରେ ଆସେମ୍ବ୍ଲି ସମ୍ମୁଖରେ ଶ୍ରୀଯୁକ୍ତ ମହତାବ ଉପସ୍ଥାପିତ କରଥିଲେ । ତାକୁ ଆଉ ପୁନରାବୃତ୍ତି କର ଲଭନାହିଁ । ଏକତଖଣ୍ଡ ଚଠି କେବଳ ଉଦ୍ଧାରକରାଗଲା ।

ମେ ମାସ ୯ ତାରଖରେ ଶ୍ରୀ ଏମ୍. ଏସ୍. ମହାନ୍ତି କୁମାର ବଜୟ ପ୍ରତାପଙ୍କୁ ଲେଖିଥିଲେ: —

"Four men from Saraikella just reached by car. Orissa Government creating awful complications. Situation extremely favourable since last evening. Have foregone engagements, extremely controlling Public Opinion. Pray confirm news of transfer Bihar. Contact Delhi Raja Saheb. Satyagraha at Saraikella must be started at once. No delay, Rajballabha Misra should be sent to Natabar at once to stir up Gangpur. Will proceed myself as soon as possible after controlling situation here and seeing Patayat etc. Have set Puri, Ganjam, Koraput astir. Bye-election at Balasore on Union issue, pray send thousand through Sura positively. Have completely exhausted myself."

"ସରେଇକଳାରୁ ୪ ଜଣ ଲୋକ ଅଳ୍ପ ସମୟ ହେଲା ମଟର ଯୋଗେ ପହଞ୍ଚିଛନ୍ତି । ଓଡ଼ିଶା ସରକାର ଭୟାନକ ଜଟିଳ ଅବସ୍ଥା ସୃଷ୍ଟି କରୁଛନ୍ତି । ଗତ ରାତିଠାରୁ ଏଠାର ଅବସ୍ଥା ବଶେଷ ଅନୁକୂଳ । ଅନ୍ୟ କାମଦାମ ବନ୍ଦ କର ଦେଇ ଲୋକମତକୁ ସଫଳତାର ସହିତ ନୟନ୍ତ୍ରଣ କରୁଛି । ସରେଇକଳା ବହାରକୁ ହସ୍ତାନ୍ତର ହେବା ସତ୍ୟ କ ନା ଜଣାନ୍ତୁ । ଦିଲ୍ଲୀଠାରେ ରାଜାସାହେବଙ୍କ ସହିତ କଥାବାର୍ତ୍ତା କରନ୍ତୁ । ସରେଇକଳା ଠାରେ ତୁରନ୍ତ ସତ୍ୟାଗ୍ରହ ଆରମ୍ଭ କରାଯିବା ଉଚିତ ବଳମ୍ବ କରନ୍ତୁନାହିଁ । ଗାଙ୍ଗପୁର ଲୋକଙ୍କୁ ମତେଇଦେବା ନମନ୍ତେ ନଟବରଙ୍କ ନକଟକୁ ରାଜବଲ୍ଲଭ ମିଶ୍ରଙ୍କୁ ତୁରନ୍ତ ପଠେଇଦେବା ଉଚିତ । ଏଠାରେ ପରସ୍ଥିତିକୁ ଆୟତ୍ତାଧୀନ କରସାରବା ସଙ୍ଗେ ସଙ୍ଗେ ମୁଁ ଚାଲିଯିବ ଏବଂ ପଟାୟତ ପ୍ରଭୃତିଙ୍କ ସଙ୍ଗେ ସାକ୍ଷାତ କରବ । ପୁରୀ, ଗଞ୍ଜାମ ଓ କୋରାପୁଟ ଲୋକଙ୍କୁ ମତାଇ ଦେଇଛି । ମିଶ୍ରଣ ସମସ୍ୟାରେ

ବାଲେଶ୍ୱରର ଉପନିର୍ବାଚନ ହେବ । ସୁର ହାତରେ ସେ କୌଣସିମତେ ହଜାରେ ଟଙ୍କା ପଠାଇବେ । ମୋ ପାଖରୁ ସବୁ ଟଙ୍କା ଶେଷ ହୋଇଗଲାଣି ।

ତା ୧୫।୫।୪୮ ରେ କୁମାର ସାହେବଙ୍କୁ ସୁରେନ୍ଦ୍ର ବାବୁ ଲେଖିଲେ:—

My dear Kumar Saheb,

× × × ×

3. Yesterday there was a mammoth meeting in the Cuttack Town Hall where Pt. L. N. Sahu, Member Constituent Assembly, the President pleaded for a Union. In the Capital town itself, there is now a formidable swing in favour of a Union. Mr. Mahatab is doing all he can, to stop it. But now it has caught fire. He cannot stop it............What passed in Jamshedpur meeting ? I have received no reply as yet either from Bolangir or Natabar Pandey.

Yours sincerely,
Sd/-Surendra
15.5.48

P.S.—We are placed in a tight corner now for want of money to arrange meetings, send men etc.

ପ୍ରିୟ କୁମାର ସାହେବ

× × × × ×

୩ । ଗତକାଲି କଟକ ଟାଉନ୍‌ହଲ୍‌ରେ ଗୋଟିଏ ବିରାଟସଭା ହୋଇଥିଲା । ଏହି ସଭାରେ ଶାସନ ବିଧାୟକ ସଭାର ସଭ୍ୟ ପଣ୍ଡିତ ଏଲ୍. ଏନ୍. ସାହୁ ସଭାପତିତ୍ୱ କରି ଗଡ଼ଜାତ ଇଉନିଅନ୍ ସପକ୍ଷରେ ମତ ପ୍ରକାଶ କରିଥିଲେ । ରାଜଧାନୀ କଟକ ସହରରେ ମଧ୍ୟ ବହୁ ସଂଖ୍ୟକ ଲୋକ ଇଉନିଅନ୍ ପ୍ରସ୍ତାବକୁ ସମର୍ଥନ କରୁଛନ୍ତି । ଏହାକୁ ବନ୍ଦ କରିବା ପାଇଁ ଶ୍ରୀ ମହତାବ ଯଥାସାଧ୍ୟ ଚେଷ୍ଟା କରୁଛନ୍ତି, କିନ୍ତୁ ବର୍ତ୍ତମାନ ଏହା ଘୃରିଆଡ଼େ ବ୍ୟାପି ଗଲାଣି, ସେ ଏହା ବନ୍ଦକରି ପାରିବେ ନାହିଁ;.................. ଜାମସେଦପୁର ବୈଠକରେ କଣ ହେଲା ? ମୁଁ ଏ ପର୍ଯ୍ୟନ୍ତ ବଲାଙ୍ଗୀରରୁ ବା ନଟବର ପାଣ୍ଡେଙ୍କଠାରୁ କୋଣସି ଉତ୍ତର ପାଇନାହିଁ ।

ଆପଣଙ୍କର ବିଶ୍ୱସ୍ତ
ସୁରେନ୍ଦ୍ର
୧୫।୫

ପୁ:ଦ୍ର:—ସଭାସମିତି କରିବା, ଲୋକ ପଠାପଠି କରିବା ଇତ୍ୟାଦି ପାଇଁ ଟଙ୍କା ଅଭାବରୁ ଆମେ ବଡ଼ ଅସୁବିଧାରେ ପଡ଼ିଛୁ ।

ପୁଣି ମେ ୧୯ ତାରିଖରେ ଶ୍ରୀ ମହାନ୍ତିଙ୍କ ଚିଠି

**URGENT**

19. 5. 48

Dear Kumar Saheb,

As our success becomes clearer, opponents press harder. Hence am in too tight corner. Pray do help. A couple of thousand needed immediately and imperatively to carry on till end of this month. Please don't fail.

Sincerely,
Sd/- M. S. Mahanty.

ଜରୁରୀ ୧୯ । ୫ । ୪୮

ପ୍ରିୟ କୁମାର ସାହେବ,

ଆମ ବିଜୟ ଯେତିକି ସ୍ପଷ୍ଟ ହୋଇ ଉଠୁଛି, ବିରୋଧୀମାନେ ସେତିକି ଜୋରରେ ଲାଗି ପଡ଼ୁଛନ୍ତି । ତେଣୁ ମୁଁ ବିଶେଷ ଅସୁବିଧାରେ ପଡ଼ିଯାଇଛି । ଏ ମାସ ଶେଷ ପର୍ଯ୍ୟନ୍ତ କାମ ଚାଲୁ ରଖିବା ପାଇଁ ଦୁଇ ହଜାର ଟଙ୍କା ତୁରନ୍ତ ନିତାନ୍ତ ଦରକାର । ପଠାଇବାକୁ କେବେହେଲେ ଭୁଲିବେ ନାହିଁ । ଇତି ।

ବିଶ୍ୱସ୍ତ
ସ୍ୱା ଏମ୍. ଏସ୍. ମହାନ୍ତି

ତତ୍‌ପୂର୍ବରୁ ଦିଲ୍ଲୀରୁ ଶ୍ରୀ ଜୟପାଲ ସିଂହ ଷଡ଼େଇକଳାର କୁମାର ସାହେବଙ୍କୁ ଜଣାଇ ରଖିଥାନ୍ତି :—

" I have already contacted the Rulers and, in fact, we meet everyday in my room for conference. We have now decided to work out a scheme for Koshal i. e. South Jharkhand which will include 12 more States......... I hope the Jubraj of Kharswan has returned to Calcutta being successful in his mission. The sooner our hands are strengthened the better for our claims........."

"ରାଜାମାନଙ୍କ ସଙ୍ଗେ ମୁଁ କଥାବାର୍ତ୍ତା ଚଳେଇଛି । ମୋ ଘରେ ଆମେ ପ୍ରାୟ ପ୍ରତିଦିନ ଭେଟି ଆଲୋଚନା କରୁଛୁ । କୋଶଳ ଅର୍ଥାତ ଦକ୍ଷିଣ ଝାଡ଼ଖଣ୍ଡ ପାଇଁ

# URGENT

(9)

19.5.48

Dear Kumar Sahab:

As our [illegible]
becomes clearer, opponents
press harder. Hence am
in tight corner. Pray
do help. A couple of
thousand needed
immediately + imperative
to carry on till end
of the month. Please
don't fail.

Sincly
[illegible signature]

ଗୋଟିଏ ଯୋଜନା ପ୍ରସ୍ତୁତ କରିବା ନିମନ୍ତେ ଆମେ ସ୍ଥିରକରି ସାରିଛୁ । ଏଥିରେ ଆଜି ୧୨ ଟିନୂଆ ଗଡ଼ଜାତ ଅନ୍ତର୍ଭୁକ୍ତ ହେବ । ଖରସୁଆଁ ଯୁବରାଜ ଯେଉଁ ଉଦ୍ଦେଶ୍ୟରେ କଲିକତା ଯାଇଥିଲେ ସେଥିରେ ସଫଳତା ହାସଲ କରି ଫେରିଛନ୍ତି ବୋଲି ମୁଁ ଆଶା କରୁଛି । ଆମେ ଯେତିକ ଟାଣୁଆ ହେବା ଆମ ଦାବୀଗୁଡ଼ିକ ସେତିକ ଦୃଢ଼ ହେବ ।”

ତା’ପରେ ଏକ ନିର୍ଦ୍ଦେଶନାମା :—

“ Do please go to Hongkong House as soon as you can so that I may implement the new scheme which means the doubling of our army. I have discussed the whole thing with the Rulers and they approve.”

“ଯେତେ ଶୀଘ୍ର ପାରନ୍ତି ହଂଗକଂଗ ହାଉସକୁ ଯିବେ; ତା ହେଲେ ଆମର ସୈନ୍ୟବାହିନୀକୁ ଦୁଇଗୁଣ ବଢ଼େଇ ଦେବା ସକାଶେ ଆମେ ଯେଉଁ ନୂଆ ଯୋଜନା କରିଛୁ ତାହା କାର୍ଯ୍ୟକାରୀ ହୋଇ ପାରିବ । ମୁଁ ସବୁକଥା ରାଜାମାନଙ୍କ ସଙ୍ଗେ କଥାବାର୍ତ୍ତା କରି ସାରିଛି ଏବଂ ସେମାନେ ଏହି ଯୋଜନାକୁ ସମର୍ଥନ କରୁଛନ୍ତି ।”

ଆଉ ଜାଣିବାର କିଛି ବାକି ରହିଲା ନାହିଁ । କଲିକତା ଅଫିସ ଭାଙ୍ଗିଦେଇ ଷଡ଼େଇକଳା ରାଜପ୍ରାସାଦକୁ ଉଠାଇ ନିଆଗଲା । ତାପରେ ଷଡ଼େଇକଳା ପଲିଟିକାଲ ସାହେବଙ୍କୁ ଗିରଫ କରାଯାଇ କଟକ ଅଣାଯାଉଥିବା ସମୟରେ ବାଟରେ ଯାଜପୁର ବଙ୍ଗଳାରେ ସେ ସ୍ୱତୋକ୍ତି କଲି ପରି କେତେକ କଥା କହି ପକାଇ ଥିଲେ, ଯାହାର ସତ୍ୟତା ପରବର୍ତ୍ତୀ ଘଟଣାରୁ ପ୍ରମାଣିତ ହୋଇଗଲା । ସେ କହି ଥିବାର ରିପୋର୍ଟରେ ଲେଖାଅଛି:—

“ The ruler and his sons like other rulers are opposed to the merger with any province. They were moving in their own way and talks to this effect are going on at Delhi. Within the next two months interesting developments would take place. That is why the pro-Union movement is being carried on alongside other movements. ”

“ରାଜା ଓ ତାଙ୍କ ପୁଅମାନେ କୌଣସି ପ୍ରଦେଶ ସଙ୍ଗେ ରହିବାକୁ ଚାହାନ୍ତି ନାହିଁ । ସେମାନେ ନିଜ ଉପାୟରେ ଲାଗିଛନ୍ତି ଏବଂ ଦିଲ୍ଲୀରେ ଏ ବିଷୟରେ କଥାବାର୍ତ୍ତା ଚାଲିଛି । ଆସନ୍ତା ଦୁଇମାସ ଭିତରେ କେତେକ ମଜାର ଘଟଣା ଘଟିବ । ସେଇଥି ପାଇଁ ଇଉନିଅନ ଆନ୍ଦୋଳନକୁ ଅନ୍ୟାନ୍ୟ ଆନ୍ଦୋଳନ ସଙ୍ଗେ କାର୍ଯ୍ୟକାରୀ କରାଯାଉଛି ।”

ଦୁଇମାସ ଆଜ ଗଲ ନାହିଁ । ଇତି ମଧ୍ୟରେ ଶ୍ରୀ ଜୟପାଳ ସିଂହଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ସେ ବୁଝି ପାରିଲେ ଯେ ତାଙ୍କୁ ସ୍ପଷ୍ଟମତ ଫାଙ୍କି ଦିଆଯାଇ ଆସିଛି । ୧୦ । ୫ । ୪୮ ତାରିଖରେ ସେ କୁମାରବିଜୟ ପ୍ରତାପଙ୍କୁ ଲେଖିଲେ:—

"Let me tell you quite bluntly that I am fed up with promises. There has been too many of them and I would much rather they were not made than that a belief should obtain we were taken in by their being made."

"ମୁଁ ଆପଣଙ୍କୁ ସାଫ ସାଫ କହିଦେଉଛି ଯେ ପ୍ରତିଶ୍ରୁତି ଶୁଣି ଶୁଣି ମୁଁ ବିରକ୍ତ ହୋଇଗଲିଣି । ଅନେକ ପ୍ରତିଶ୍ରୁତି ଆମକୁ ଦିଆଗଲାଣି ଏବଂ ମୁଁ ଭାବୁଛି ଯେ ପ୍ରତିଶ୍ରୁତିରେ ଆମେ ଭୁଲି ଯାଇଛୁ ବୋଲି ବିଶ୍ୱାସ ଜନ୍ମିବା ଅପେକ୍ଷା ବରଂ ପ୍ରତିଶ୍ରୁତି ନ ଦିଆହୋଇଥିଲେ ଭଲ ହୋଇଥାନ୍ତା ।"

ସେଇ ଚିଠିର ଆଦ୍ୟ ଭାଗରେ ଲେଖା ଯାଇଥିଲା :—

"Although no official communique will be issued for about a week, it is definite that Mahatab has lost; Saraikella and Kharswan will be committed to the administration of Bihar. The next round will be equally hard and I hope that at least the nine rulers of the remaining Chhotanagpur States will pull their socks up and fork out the shekels so that positive work may continue."

"ଯଦିଓ ସପ୍ତାହକ ପର୍ଯ୍ୟନ୍ତ କୌଣସି ସରକାରୀ ଘୋଷଣା ପ୍ରକାଶ ପାଇବନାହିଁ ତଥାପି ଏକଥା ନିଧାର୍ଯ୍ୟ ଯେ ଶ୍ରୀ ମହତାବ ହାରିଗଲେ । ସରେଇକଳା ଓ ଖରସୂଆଁ ବିହାର ଶାସନାଧୀନ ହେବ । ଏହାର ପରବର୍ତ୍ତୀ କାର୍ଯ୍ୟକ୍ରମ ମଧ୍ୟ ଏହିଭଳି କଠିନ ହେବ ଏବଂ ମୁଁ ଆଶା କରୁଛି ଯେ ଅନ୍ତତଃ ଛୋଟନାଗପୁର ଗଡ଼ଜାତ ମଣ୍ଡଳର ଅବଶିଷ୍ଟ ୯ଟି ରାଜ୍ୟ ଏତେବେଳେ ଅଣ୍ଟା ଭିଡ଼ି ଟଙ୍କା ବାହାରିବାକୁ ବାହାରିବେ । ତାହାହେଲେ ନିର୍ଦ୍ଦିଷ୍ଟ କାମ ହୋଇପାରିବ ।"

ଶେଷରେ ସରେଇକଳା ଓ ଖରସୂଆଁ ବିହାର ଶାସନାଧୀନ ହୋଇ ରହିବେ ବୋଲି ଭାରତ ସରକାର ନିଷ୍ପତ୍ତି କଲେ । କିନ୍ତୁ ଶ୍ରୀ ଜୟପାଳ ସିଂହ ତଥାପି ଭାବୁଥିଲେ ଯେ ଏଇ ଦୁଇଟି ରାଜ୍ୟ ବର୍ତ୍ତମାନ ପାଇଁ ବିହାର ସଙ୍ଗେ ମିଶାଇ ଦିଆଯାଉଛି ସିନା କିନ୍ତୁ ତାହା ଅଚିରେ ତାଙ୍କୁ ଫେରାଇ ଦିଆଯିବ । ୧୪ । ୫ । ୪୮



(2)

217, Imperial Hotel,
New Delhi.
10th May 1948.

The Kumar Saheb of Seraikela,
3/1, Camac Street,
Calcutta.

My dear Kumar Saheb,

Although no official communique will be issued for about a week, it is definite that Mahtab has lost; ~~and~~ Seraikela and Kharsawan will be committed to the Administration of Bihar. The next round will be equally hard and I hope that at least the nine Rulers of the remaining Chhota Nagpur States will pull their socks up and fork out the shekels so that positive work may continue. Let me tell you quite bluntly that I am fed up with promises. There has been too many of them and ~~I would like to see that~~ I would much rather they were not made than that a belief should obtain we were taken in by their being made.

Yours sincerely,

Jaipal Singh

ତାରିଖରେ ଅର୍ଥାତ ଭାରତ ସରକାରଙ୍କ ଘୋଷଣା ପ୍ରକାଶ ପାଇବାର ତିନଦିନ ପୂର୍ବରୁ ସେ କୁମାର ବିଜୟ ପ୍ରତାପଙ୍କୁ ଲେଖିଥିଲେ :—

New Delhi
14th May, 1948

"Dear Kumar Saheb,

On receipt of this letter, please go to Singhbhum so that you may be on the spot when the handing-over ceremony takes place in Saraikella and Kharswan. They will be given back to us within a few days.

Oriyas will of course try to create trouble, but we must rise above pettiness and see to it that the transfer and restoration ceremony passes off without any incident. Later we shall bring to book the Oriya hirelings.

Yours sincerely,
Sd/-Jaipal Singh

ନୂଆଦିଲ୍ଲୀ
ମେ ୧୪ ତାରିଖ ୧୯୪୮

"ପ୍ରିୟ କୁମାର ସାହେବ !

ଏହି ପତ୍ର ଖଣ୍ଡିକ ପାଇ ଆପଣ ସିଂହଭୂମ ଚାଲିଯିବେ କାରଣ ତା ହେଲେ ସରେଇକଲା ଓ ଖରସୁଆଁ ହସ୍ତାନ୍ତର ଉତ୍ସବ ଅନୁଷ୍ଠିତ ହେଲାବେଳେ ଆପଣ ସେଠାରେ ଉପସ୍ଥିତ ରହି ପାରିବେ । ଅଳ୍ପ କେତେ ଦିନ ଭିତରେ ତ ଏ ଦୁଇଟି ରାଜ୍ୟ ଆମକୁ ମିଳିଯାଉଛି ।

ଅବଶ୍ୟ ଓଡ଼ିଆମାନେ ଗଣ୍ଡଗୋଳ କରିବାକୁ ଚେଷ୍ଟା କରିବେ । କିନ୍ତୁ ଆମକୁ ଏ ସବୁ ଛୋଟ ଛୋଟ କଥାରୁ ଅଲଗା ରହିବାକୁ ପଡ଼ିବ ଓ ଏହି ଦୁଇଟି ରାଜ୍ୟକୁ ଓଡ଼ିଶାରୁ ବାହାର କରି ଆଣି ବିହାର ହାତରେ ଦେଇଦେବା କାର୍ଯ୍ୟ ଯେପରି ନିର୍ବିଘ୍ନରେ ସମାପନ ହୁଏ ତହିଁର ବ୍ୟବସ୍ଥା କରିବାକୁ ହେବ । ପରେ ଆମେ ଭଡ଼ାଟିଆ ଓଡ଼ିଆଙ୍କୁ ଦେଖିନେବା । ଇତି

ଆପଣଙ୍କର
ବିଶ୍ୱସ୍ତ
ସ୍ୱାଃ ଜୟପାଳ ସିଂହ

ଅବଶେଷରେ ୧୯୪୮ ମେ ମାସ ୧୭ ତାରିଖରେ ଷଢ଼େଇକଳା ଖରସୁଆଁ ବିହାର ସଙ୍ଗେ ମିଶାଇ ଦିଆଗଲା ।

ତା ପରର ଘଟଣା ବଡ଼ କୌତୁକପ୍ରଦ । ଚକ ଓଲଟା ଆଡ଼େ ଘୂରିବାକୁ ଲାଗିଲା । ମିଶ୍ରଣ ପ୍ରସ୍ତାବକୁ ଚିରକାଳ ବିରୋଧ କରିଆସିଥିବା ରାଜା ମହାରାଜାମାନେ ବର୍ତ୍ତମାନ ଏକସ୍ୱରରେ ଚିତ୍କାର କରିବାକୁ ଲାଗିଲେ—ଷଢ଼େଇକଳା ଖରସୁଆଁକୁ ବିହାରରୁ ଫେରାଇ ଆଣି ଓଡ଼ିଶାରେ ମିଶାଅ । ଏଣେ ଷଢ଼େଇକଳା ରାଜାସାହେବ କେନ୍ଦ୍ରୀୟ ରାଜ୍ୟ ମନ୍ତ୍ରିଦପ୍ତରକୁ ଲେଖାଲେଖି କରି କିଛି ଫଳ ନ ହେବାରୁ ଡେରାଡୁନ ପର୍ଯ୍ୟନ୍ତ ଯାଇ ସର୍ଦ୍ଦାର ପଟେଲଙ୍କୁ ସାକ୍ଷାତ କରି ତାଙ୍କ ଗୁହାରି ଶୁଣାଇଲେ । ଦିଲ୍ଲୀରେ ବଡ଼ ବଡ଼ ନେତାମାନଙ୍କୁ ଭେଟି ନିଜର ଦୁଃଖ ଜଣାଇଲେ । ସେମାନେ କହିଲେ ଆମକୁ କହିଲେ କଣ ହେବ ? ଶାସନବିଧାୟକ ସଭାର ସଭ୍ୟମାନଙ୍କୁ ଧରାଧରି କର । ପଟାୟତ ସାହେବ ଷଢ଼େଇକଳାରେ ଆଦିବାସୀମାନଙ୍କୁ ପୂର୍ବପରି ମତାଇବାରେ ଲାଗିଲେ ।

ଶ୍ରୀ ନୃପେନ୍ଦ୍ର ନାରାୟଣ ସିଂହ ଦେଓ ତାଙ୍କର ବଡ଼ଚୁଚୁ କୁମାର ବିଜୟ ପ୍ରତାପଙ୍କ ନିକଟକୁ ସଫା ସଫା ଲେଖିଦେଲେ—ଓଡ଼ିଶା ନୁହେ, ବିହାର ନୁହେ, ୟୁନିଅନ ହିଁ ଏକମାତ୍ର ପନ୍ଥା । ସେ ଲେଖିଥିଲେ :—

Seraikella
22nd June, 1948

My dear Badachacha,

I have not heard anything from you since you left this place. You had been to Patna and I do not know what transpired there. We went to Jamshedpur and father has gone to Ranchi. I am supposed to join him shortly after discussing certain points regarding the inventory here. But the Bihar officials are worthless and I have not been able to find time to discuss anything. They are still busy with the shows. Jaglal Chowdhury came here. The Commissioner is coming I hear. These flying visits will not solve the problem. The Bihar people are nice to talk about but what action they are going to take is yet to be seen. There are many here who feel that they have been

(3)




217, Imperial Hotel,
New Delhi.
14th May 1948.

Kumar Saheb of Seraikela,
3/1, Camac Street,
Calcutta.

Dear Kumar Saheb,

On receipt of this letter, please go to Singhbhum so that you may be on the spot when the handing-over ceremony takes place in Seraikela and Kharsawan. They will be given back to us within a few days.

Oriyas will of course try to create trouble, but we must rise above pettiness and see to it that the transfer and restoration ceremony passes off without any incident. Later we shall bring to book the Oriya hirelings.

Yours sincerely,

Jaipal Singh

disillusioned and there is hardly any difference between Twidledum and Twidledee. The Union is the only solution.

Yours affectionately,
Sd/- Nrupendra.

ସରେଇକଲା
ଜୁନ ୨୨ ତାରିଖ ୧୯୪୮

ପ୍ରିୟ ବଡ଼ ଚଚା,

ଆପଣ ଏଠାରୁ ଯିବାପରଠାରୁ ମୁଁ ଆପଣଙ୍କଠାରୁ କୌଣସି ଚିଠି ପତ୍ର ପାଇନାହିଁ । ଆପଣ ପାଟନା ଯାଇଥିଲେ । ସେଠାରେ କଣ ହେଲା ମୁଁ କିଛି ଜାଣି ପାରିଲି ନାହିଁ । ଆମେ ଜାମସେଦପୁର ଯାଇଥିଲୁ ଏବଂ ବାପା ରାଞ୍ଚି ଯାଇଛନ୍ତି । ସମ୍ପ୍ରତି ବାଡ଼ ତାଲିକା ସମ୍ବନ୍ଧରେ ଏଠାରେ କେତେକ କଥାବାର୍ତ୍ତା କରିସାରିଲା ପରେ ମୁଁ ତାଙ୍କ ପାଖକୁ ଯିବାର କଥା ରହିଛି । କିନ୍ତୁ ବିହାରକର୍ମଚାରୀମାନେ କୌଣସି କାମର ନୁହନ୍ତି; ମୁଁ କୌଣସି କଥା କଥାବାର୍ତ୍ତା କରିବାକୁ ସମୟ ପାଇନାହିଁ । ସେମାନେ ଏ.ପର୍ଯ୍ୟନ୍ତ ଉପର ଦେଖାଣିଆ କଥାରେ ମାତିଛନ୍ତି । ଜଗଲାଲ ଚୌଧୁରୀ ଏଠାକୁ ଆସିଥିଲେ । ମୁଁ ଶୁଣୁଛି କମିସନର ଆସୁଛନ୍ତି । କିନ୍ତୁ ଏହିଭଳି ପରିଦର୍ଶନରେ ଆସି ହଠାତ୍ ବାହାରି ଯିବାରେ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ବିହାର ଲୋକେ ତ ବେଶ ସୁନ୍ଦର କଥାବାର୍ତ୍ତା କରୁଛନ୍ତି, କିନ୍ତୁ ସେମାନେ କାର୍ଯ୍ୟକ୍ଷେତ୍ରରେ କଅଣ କରୁଛନ୍ତି ତାହା ଦେଖିବାକୁ ବାକି ରହିଛି । ଏଠାରେ ଅନେକ ଲୋକ ଭାବୁଛନ୍ତି ଯେ ସେମାନଙ୍କ ଭ୍ରମ ଦୂର ହୋଇ ବର୍ତ୍ତମାନ ଆଖି ଖୋଲିଯାଇଛି—ଯୁଆଡ଼କୁ ଗଲେ ସେମାନଙ୍କର ଏକାଦଶୀ । ତେଣୁ ଇଉନିଅନହିଁ ଏକମାତ୍ର ସମାଧାନର ଉପାୟ ।

ଆପଣଙ୍କର
ବିଶ୍ୱସ୍ତ
ନୃପେନ୍ଦ୍ର

( ଶ୍ରୀ ଜଗଲାଲ ଚୌଧୁରୀ ସେତେବେଳେ ବିହାରର ଜଣେ ମନ୍ତ୍ରୀ ଥିଲେ )

ସେତିକବେଳେ ଶ୍ରୀ ମହତାବ୍ ଯୁନ୍ ୨୩ ତାରିଖରେ ସର୍ଦ୍ଦାର ପଟେଲଙ୍କ ପାଖକୁ ସରେଇକଲା ସମ୍ବନ୍ଧରେ ଯେଉଁ ଚିଠି ଲେଖିଥିଲେ ସେଥିରୁ କିଛି ଗୋଟିଏ ଭିନ୍ନ ଚିତ୍ର ମିଳୁଛି ।

ସେ ଲେଖିଥିଲେ :—

"On my return from Delhi I met the Raja of Saraikella at the Howrah Railway Station Platform. I found the Raja

a completely changed man. He pathetically appealed to me to forget the past and now help him in coming back to Orissa. I pleaded helplessness in the matter, as the matter had already been decided by Government of India because of the part played by the Raja at one time.........On my arrival at Cuttack, I see the Yubraj of Saraikella also staying on here. He has seen me twice or thrice during the last two or three days.........It was well known that the trouble which started in Saraikella was due to the machinations of the Ruler. It is wrong to blame Bihar in the matter. We got baffled not on account of Bihar but on account of the Ruler's intrigue. The Ruler admitted to me that he would get the merger unsettled by that means. Now he realises his mistake. "

ସେ ଲେଖିଥିଲେ:—

"ଦିଲ୍ଲୀରୁ ଫେରୁଥିଲାବେଳେ ହାଓଡ଼ା ରେଲଓ୍ୱେ ଷ୍ଟେସନଠାରେ ଷଡ଼େଇକଳା ରାଜାସାହେବଙ୍କ ସଙ୍ଗେ ମୋର ଦେଖାହୋଇଥିଲା । ରାଜାଙ୍କର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିବାର ମୁଁ ଲକ୍ଷ କଲି । ଅତୀତକୁ ଭୁଲିଯିବା ପାଇଁ ଏବଂ ଓଡ଼ିଶାକୁ ଫେରି ଆସିବାରେ ବର୍ତ୍ତମାନ ତାଙ୍କୁ ସାହାଯ୍ୟ କରିବା ପାଇଁ ମତେ ବିକଳ ହୋଇ ନିବେଦନ କରିଥିଲେ । ରାଜା ଗୋଟିଏ ସମୟରେ ଯେଉଁ ଖେଳ ଖେଳିଲେ ତା ଫଳରେ ଭାରତ ସରକାର ଏ ସମ୍ପର୍କରେ ଶେଷ ନିଷ୍ପତ୍ତି କରିଦେଇ ସାରିଛନ୍ତି । ତେଣୁ ଏ ବିଷୟରେ କୌଣସି ପ୍ରକାର ସାହାଯ୍ୟ କରିବା ମୋ ପକ୍ଷରେ ସମ୍ଭବ ନୁହେ ବୋଲି ମୁଁ ତାଙ୍କୁ ଜଣେଇ ଦେଇଥିଲି । କଟକକୁ ଫେରିଆସି ମୁଁ ଦେଖିଲି ଯେ ଷଡ଼େଇକଳାର ଯୁବରାଜ ଏଠାରେ ଅଛନ୍ତି । ଗତ ଦୁଇ ତିନି ଦିନ ଭିତରେ ସେ ମୋତେ ଦୁଇ ତିନିଥର ସାକ୍ଷାତ କରି ସାରିଲେଣି । ଏହା ଅତି ଜଣାଶୁଣା କଥା ଯେ ଷଡ଼େଇକଳାରେ ଯେଉଁ ଗୋଳମାଳ ଆରମ୍ଭ ହୋଇଥିଲା ତାହା ରାଜାଙ୍କ କାରସାଦି ଯୋଗୁଁ ହୋଇଥିଲା । ଏଥିରେ ବିହାରକୁ ଦୋଷ ଦେବା ଭୁଲ । ବିହାର ଯୋଗୁନୁହେଁ, ରାଜାଙ୍କ ଷଡ଼ଯନ୍ତ୍ର ଯୋଗୁଁ ଆମ ଉଦ୍ୟମ ବିଫଳ ହୋଇଥିଲା । ରାଜା ମୋ ପାଖରେ ସ୍ୱୀକାର କରିଥିଲେ ଯେ ସେହି ଉପାୟରେ ସେ ମିଶ୍ରଣ ନିଷ୍ପତ୍ତିକୁ ଓଲଟାଇ ଦେବେ । ବର୍ତ୍ତମାନ ସେ ତାଙ୍କର ଭୁଲ ବୁଝି ପାରିଛନ୍ତି ।"

ସେ ଯାହାହେଉ ଶ୍ରୀଯୁକ୍ତ ମହତାବ ବୁଝିଥିଲେ ଯେ ଏହା ଶୁଭ ସଙ୍କେତ ନୁହେଁ । ଯେଉଁ ରାଜାମାନେ ନିରୀହ ଆଦିବାସୀମାନଙ୍କୁ ମତାଇ ଗଣ୍ଡଗୋଳ ସୃଷ୍ଟିକରି ସରାଇକଳା ଖରସୁଆଁକୁ ବିହାର ସହିତ ମିଶାଇବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ ସେମାନଙ୍କର ଏଇ ହଠାତ ମତପରିବର୍ତ୍ତନର ହେତୁ କଣ ? ଏଥିରେ ସେହି ପୁରାତନ ଇଉନିଅନ-ଗଠନର ଗୁପ୍ତ ଷଡ଼ଯନ୍ତ୍ର ଲୁଚି ରହିନାହିଁ ତ ! ଏହା ଏକା ବିହାର ବିରୁଦ୍ଧରେ ଆନ୍ଦୋଳନ ନା ପଡ଼ୋଶୀ ପ୍ରଦେଶ ସହିତ ଗଡ଼ଜାତ ମିଶ୍ରଣ ମାତ୍ର ବିରୁଦ୍ଧରେ କୋଟିଏ ନୂତନ କୌଶଳ ? ସରାଇକଳା ରୁହିଁଲେ ଓଡ଼ିଶା ସରକାର ତାଙ୍କ ପାଇଁ ସୁପ୍ରିମ କୋର୍ଟକୁ ଯାଆନ୍ତୁ; କିନ୍ତୁ କାହିଁକି ? ପଡ଼ୋଶୀ ପ୍ରଦେଶର ବିରାଗଭାଜନ ହୋଇ ଭାରତସରକାରଙ୍କ ନିଷ୍ପତ୍ତି ଲଙ୍ଘନ କରି ଏଇ କତିପୟ ସଙ୍କୀର୍ଣ୍ଣମନା ସ୍ୱାର୍ଥପର ରାଜାମହାରାଜାଙ୍କ ପାଦକୁ ଖୋରାକ ଯୋଗାଇବା କଣ ଉଚିତ ହେବ ? ତା' ଛଡ଼ା ଭାରତସରକାରଙ୍କ ନିଷ୍ପତ୍ତି ଯେ ସିଂହଭୂମ ଜିଲ୍ଲାର ଶାସନଭାର ଯେଉଁ ସରକାର ନେବ, ସରାଇକଳା ଖରସୁଆଁ ରାଜ୍ୟଦ୍ୱୟ ସେହି ଶାସନାନ୍ତର୍ଗତ ହେବ । ଏ ନିଷ୍ପତ୍ତି ତ ସର୍ବତୋଭାବେ ଯୁକ୍ତିଯୁକ୍ତ ଓ ଯଥାର୍ଥ । ସିଂହଭୂମକୁ ଛାଡ଼ି ସରାଇକଳା ଖରସୁଆଁ ମିଶାଇନେବା ପ୍ରଶ୍ନ ଅବାନ୍ତର । ତେଣୁ ପ୍ରଶ୍ନ ହେଉଛି ସିଂହଭୂମ କେଉଁ ପ୍ରଦେଶର ଅଙ୍ଗ ହେବା ବାଞ୍ଛନୀୟ—ଓଡ଼ିଶାର ନା ବିହାରର ? ଠିକ ଏହି ପ୍ରଶ୍ନ ସୀମାକମିସନଙ୍କ ଆଗରେ ଥିଲା । ସେ ଯାହାହେଉ ଓଡ଼ିଶାସରକାରଙ୍କୁ ଏ ଦିଗରେ ଗୃଳବାକୁ ସବୁ ପ୍ରକାର ଚେଷ୍ଟା ବିଫଳ ହେଲା । ଓଡ଼ିଶା ସରକାର ଅଟଳ । ୧୯୪୯ ସେପ୍ଟେମ୍ବର ମାସରେ ଭାରତସରକାର ତାଙ୍କର ମତ ଆଉଥରେ ସ୍ପଷ୍ଟ କରି ଶୁଣାଇ ଦେଲେ । ସରାଇକଳା, ଖରସୁଆଁକୁ ବିହାର ସଙ୍ଗେ ମିଶାଇବା ନିଷ୍ପତ୍ତି ବୁଝିବିଚାରି କରାଯାଇଛି ଓ ସେଥିରେ କୌଣସି ପରିବର୍ତ୍ତନ କରାଯାଇ ନ ପାରେ ।

ପାଟଣା ମହାରାଜାଙ୍କର ଦେଶବିରୋଧୀ କାର୍ଯ୍ୟକଳାପ ପ୍ରତି ତାଙ୍କର ଦୃଷ୍ଟିଆକର୍ଷଣ କରି ଭାରତସରକାର ତାଙ୍କୁ ସାବଧାନ କରାଇ ଦେଇଥିଲେ ଓ ଭବିଷ୍ୟତରେ ଏ ପ୍ରକାର କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ପରାମର୍ଶ ଦେଇଥିଲେ । ଆହୁରି ମଧ୍ୟ ତାଙ୍କୁ ସ୍ପଷ୍ଟଭାବରେ ଜଣାଇ ଦିଆଯାଇଥିଲା ଯେ ସରାଇକଳା ରାଜାଙ୍କର ସକ୍ରିୟ ଉଦ୍ୟମରେ ଯେ ଦୁଇଟି ରାଜ୍ୟ ବିହାର ସହିତ ମିଶାଇ ଦିଆଯାଇଥିଲା ଓ ବର୍ତ୍ତମାନ ତାଙ୍କର ଖିଆଲ ଉପରେ ଭାରତସରକାର ତାଙ୍କ ନିଷ୍ପତ୍ତି ବଦଳାଇ ପାରିବେ ନାହିଁ ।

( ତିନି )

ତା’ ପରର ଇତିହାସ ସଂକ୍ଷିପ୍ତ । ୧୯୫୩ ଡିସେମ୍ବର ମାସରେ ରାଜ୍ୟ ପୁନର୍ଗଠନ କମିସନ ନିଯୁକ୍ତ ହୋଇ ୧୯୫୫ ନଭେମ୍ବର ମାସରେ ଯେଉଁ ରିପୋର୍ଟ ଦେଲେ ତାହା ଓଡ଼ିଶାରେ ଘୋର ନୈରାଶ୍ୟ ଓ ଅସନ୍ତୋଷ ସୃଷ୍ଟିକଲା । ଓଡ଼ିଶାର ଯଥାର୍ଥ ଦାବିପ୍ରତି କମିସନ ଯେ ପର୍ଯ୍ୟାପ୍ତ ଧ୍ୟାନ ଦେଇ ପାରିନାହାନ୍ତି ବା ଆମ ତରଫରୁ ଆମର ସ୍ମାରକପତ୍ରମାନଙ୍କରେ ଯେଉଁ ଯୁକ୍ତି ଉପସ୍ଥାପିତ କରାଯାଇଥିଲା ସେଗୁଡ଼ିକ ଯେ ପୁଙ୍ଖାନୁପୁଙ୍ଖରୂପେ ବିଚାର କରାଯାଇ ନାହିଁ ସେ ସମସ୍ତ ବିଷୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ବିଧାନ ସଭାରେ ୧୯୫୫ ନଭେମ୍ବର ୨୮ ତାରିଖରେ ଅତି ପ୍ରାଞ୍ଜଳ ଭାବରେ ବୁଝାଇ ସାରିଛନ୍ତି । କମିସନଙ୍କ ଯୁକ୍ତିକୁ ଖଣ୍ଡନ କଲାଭଳି ଓ ଖାସ୍ କରି ସିଂହଭୂମ ସଦର, ସରେଇକଳା, ଖରସୁଆଁ ଅଞ୍ଚଳ ସଂପର୍କରେ ଓଡ଼ିଶାର ଦାବିକୁ ଅଧିକ ଦୃଢ଼ ଓ ଯୁକ୍ତିଯୁକ୍ତ କରି ପୁଣି ଗୋଟିଏ ସ୍ମାରକପତ୍ର ପ୍ରସ୍ତୁତ କରାଯାଇ ଭାରତ ସରକାରଙ୍କ ନିକଟକୁ ପଠାଯାଇ ଆମର ନ୍ୟାଯ୍ୟ ଦାବିପ୍ରତି ସୁବିଚାର କରାଯିବାପାଇଁ ଯଥାସମ୍ଭବ ଚେଷ୍ଟା ଓ ଉଦ୍ୟମ କରାଯାଇଥିଲା । ଆମେ ଓ ଅନ୍ୟରାଜ୍ୟର ଲୋକମାନେ ନିଜନିଜର ଦୃଷ୍ଟିକୋଣରୁ ସମସ୍ୟାର ସମାଧାନ ଚିନ୍ତା କରୁଥିଲାବେଳେ, ଭାରତ ସରକାରଙ୍କୁ ସବୁ ଦିଗରୁ ବିଚାର କରିବାକୁ ହେଲା । ଅଖଣ୍ଡ ଭାରତର ମୂଳ ନୀତି ଓ ଆଦର୍ଶ ଅକ୍ଷୁଣ୍ଣ ରଖି ସାଧାରଣ ଦେଶବାସୀଙ୍କର ସ୍ୱାଚ୍ଛନ୍ଦ୍ୟ ଓ ହିତ ଦୃଷ୍ଟିରୁ ଯାହା ସର୍ବଶ୍ରେଷ୍ଠ ଓ ବାଞ୍ଛନୀୟ ବୋଲି ବିବେଚିତ ହେଲା ସେହି ଅନୁସାରେ ନିଷ୍ପତ୍ତି ହେଲା । ଏପରି ନିଷ୍ପତ୍ତି ଯେ ଏକ ସମୟରେ ସବୁପ୍ରକାର ଦାବିକୁ ପୂରଣ କରିପାରିବ ତାହା କଦାପି ସମ୍ଭବ ନୁହେଁ । କେତେକ କାରଣରୁ ଯାହା କି ଆମକୁ ଆମ ଦୃଷ୍ଟିକୋଣରୁ ସବୁଠାରୁ ବଡ଼ ଓ ସୁବିଧାଜନକ ମନେ ହେଉଛି ତାହା ସମଗ୍ର ଦୃଷ୍ଟିରୁ ହୁଏତ ସେତେ ପ୍ରାଧାନ୍ୟ ପାଇପାରିଲା ନାହିଁ । ଫଳରେ ଯାହା ନିଷ୍ପତ୍ତି ହେଲା ସେଥିରେ ଆମ ମନ ମାନିଲାନାହିଁ । ଆମ ପ୍ରତି ଘୋର ଅନ୍ୟାୟ ହୋଇଛି ବୋଲି ଆମର ମନରେ କ୍ଷୋଭ ବା ଅସନ୍ତୋଷ ଜାତ ହେବା ସ୍ୱାଭାବିକ ଓ ତାହା ହୋଇଛି । କିନ୍ତୁ ସେହି ବିକ୍ଷୋଭ ପ୍ରକାଶ କରିବାକୁ ଯାଇ ଆମେ ଯଦି ହିତାହିତଜ୍ଞାନଶୂନ୍ୟ ଓ ଉନ୍ମତ୍ତ ହୋଇ ଦେଶର ଆର୍ଥିକ ଜୀବନକୁ ଅଚଳକରି ସାଧାରଣ ସମ୍ପତ୍ତିକୁ ପୋଡ଼ିଜାଳି, ନଷ୍ଟଭ୍ରଷ୍ଟ କରି ସାଧାରଣ ଜୀବନକୁ ଭୟଭୀତ ଓ ଆତଙ୍କଗ୍ରସ୍ତ କରୁ ତାହାର ପରିଣାମ ଆମର ଲକ୍ଷ୍ୟସାଧନରେ ତ ସାହାଯ୍ୟ କରିବନାହିଁ ବରଂ ଆମ ବିରୁଦ୍ଧରେ ଦେଶର ଭିତରେ ଓ ବାହାରେ ଗୋଟିଏ ତୀବ୍ର ଜନମତ ସୃଷ୍ଟି ହେବ ।

ସୀମା ଗଣ୍ଡଗୋଳର ଯଥାର୍ଥତା ପ୍ରମାଣ କରିବା ନିମନ୍ତେ କେତେକ ମହଲରେ ସ୍ୱାଧୀନତା ଆନ୍ଦୋଳନର ନଜିର ଦିଆଯାଉଛି ଏବଂ ବିଶେଷଭାବରେ ୧୯୪୨ ଆନ୍ଦୋଳନର ହିଂସାକାଣ୍ଡ କଥା ବର୍ଣ୍ଣାଯାଉଛି । ଏହାର ଉତ୍ତରଦେଇ ମୁଖ୍ୟମନ୍ତ୍ରୀ ନିକଟରେ ଓଡ଼ିଶା ଆସେମ୍ବ୍ଲିରେ ଯାହା କହିଥିଲେ ତାହା ଏଠାରେ ଉଲ୍ଲେଖ କଲେ ଯଥେଷ୍ଟ ହେବ । ମୁଖ୍ୟମନ୍ତ୍ରୀ କହିଥିଲେ—ଅବଶ୍ୟ ଇଂରେଜ ସରକାରଙ୍କ ସଙ୍ଗେ ଲଢ଼େଇ ଚାଲିଥିଲାବେଳେ ହିଂସାଭାବରେ ହେଉ ବା ଅହିଂସ ଭାବରେ ହେଉ ଏପରି ଅନେକ କାର୍ଯ୍ୟ କରିବାକୁ ହୋଇଥିଲା, କିନ୍ତୁ ଆମଦେଶରେ ଯେତେବେଳେ ଗଣତନ୍ତ୍ର ଚାଲିଛି, ସେତେବେଳେ ଗୋଟିଏ ଅବିଚାର ହୋଇଗଲା ବୋଲି ସତ୍ୟାଗ୍ରହ କରିବା, ରେଲଲାଇନ ବନ୍ଦକରିବା, ବେତାର କେନ୍ଦ୍ରରୁ ଯେପରି ଖବର ନ ଯାଇ ପାରିବ ତାକୁବନ୍ଦ କରିବା ଏବଂ ଯାହାର ଯାହା ମନକୁ ଆସିଲା କରିବାର କୌଣସି ଅର୍ଥ ନାହିଁ ।

ଶେଷରେ ଏତିକି କହିବାର କଥା ଯେ ଆଜି ଯେଉଁମାନେ ଉତ୍କଳ ସମ୍ମିଳନୀର ନେତୃତ୍ୱ ନେଇଛନ୍ତି ଏବଂ ବିଚ୍ଛିନ୍ନ ଅଞ୍ଚଳ ମିଶ୍ରଣ ପାଇଁ ବ୍ୟାକୁଳତା ଦେଖାଉଛନ୍ତି, ସେହିମାନେ କିପରି ବୃହତ୍ତର ଉତ୍କଳ ଗଠନ କରିବାରେ ଶେଷପର୍ଯ୍ୟନ୍ତ ବାଧାଦେଇଥିଲେ, କାଳର ଦୁର୍ବାର ଗତି ଯୋଗୁଁ ଯେତେବେଳେ ଗଡ଼ଜାତଗୁଡ଼ିକ ଓଡ଼ିଶା ସଙ୍ଗେ ମିଶି ବୃହତ୍ତର ଉତ୍କଳ ଗଠନର ସ୍ୱପ୍ନ ସଫଳ ହେଲା ସେତେବେଳେ ମଧ୍ୟ ସେହି ନିଷ୍ପତ୍ତିକୁ ଓଲଟାଇବା ପାଇଁ ସେମାନେ କିପରି ଚକ୍ରାନ୍ତ କରୁଥିଲେ ଏବଂ ଯେତେବେଳେ ଧଡ଼େଇକଳା, ଖରସୁଆଁକୁ ଅତିଦୁଃଖର ସହିତ ଓଡ଼ିଶାବାସୀଙ୍କୁ ହରାଇବାକୁ ପଡ଼ିଥିଲା, ତହିଁର ଯେଉଁସବୁ ପ୍ରମାଣ ଏହି ପୁସ୍ତିକାରେ ଲିପିବଦ୍ଧ କରାଯାଇଛି ତାହା ଦେଶବାସୀଙ୍କ ନିକଟରେ ଉପସ୍ଥାପିତ କରାଗଲା । ଓଡ଼ିଶାବାସୀ ଏଇଥିରୁ ସେମାନଙ୍କ କାର୍ଯ୍ୟକଳାପ ଆଲୋଚନା କରନ୍ତୁ । ଆଜି ଯେଉଁ ସୀମା ସଂକ୍ରାନ୍ତ ପ୍ରଶ୍ନରେ ଓଡ଼ିଶାର ସବୁ ଦଳ ଓ ସବୁ ଶ୍ରେଣୀର ଲୋକ ଏକମତ, ସେହି ବିଷୟକୁ ଶାନ୍ତିପୂର୍ଣ୍ଣଭାବରେ ବିଚାର କରିବା ପାଇଁ ସୁବିଧା ନ ଦେଇ ସେଥିରୁ ରାଜନୈତିକ ଫାଇଦା ଉଠେଇବା ସକାଶେ ସେହିମାନେ ଯେପରି ବିଚାର ହୀନ କାର୍ଯ୍ୟପନ୍ଥା ଧରିଲେ, ତା ଫଳରେ ସମଗ୍ର ଆନ୍ଦୋଳନଟି ସମାଜବିରୋଧୀ ଲୋକଙ୍କ ହାତକୁ ଚାଲିଯାଇ ଆମ ଉଦ୍ଦେଶ୍ୟ ପଣ୍ଡ ହେଲା ଏବଂ ଓଡ଼ିଶାବାସୀ ନାନା ଭାବରେ କ୍ଷତିଗ୍ରସ୍ତ ହେଲେ ।

(26)



DEOGARH P.O.

VIA BAMRA, B.N.R.

14/8/48

My dear Raja Saheb,

On second thought, I find that you should send the appeals to me ~~as~~ those written in English. We don't want to send the oriya copies because I feel that incase untoward things happens we might not go to Bihar. If oriya appeals are sent to Central Govt. ~~How~~ they might think that the people are oriyas & it might hamper our cause

P.T.O.

I would, therefore, like you to send 25 English copies ~~of~~ and 25 Oriya copies.

Thanks

Yours sincerely

[illegible]

## ବାମଣ୍ଡା ଦରବାରରୁ ଷଢ଼େଇକଳାର ରାଜାସାହେବଙ୍କ ନିକଟକୁ ଚିଠି

ପୋ: ଦେଓଗଡ଼
ବାମଣ୍ଡା (ବି: ଏନ୍: ଆର୍)
୧୪-୩-୪୮

ପ୍ରିୟ ରାଜାସାହେବ,

ପରେ ଯେବ ମୁଁ ଦେଖୁଛି ଯେଉଁ ନିବେଦନପତ୍ରଗୁଡ଼ିକ ଇଂରାଜୀରେ ଛପା ହୋଇଛି ସେଗୁଡ଼ିକୁ ଆପଣଙ୍କର ମୋ ପାଖକୁ ପଠାଇଦେବା ଦରକାର । ଆମେ ଓଡ଼ିଆରେ ଛପା ହୋଇଥିବା ନିବେଦନପତ୍ର ପଠାଇବାକୁ ଚାହୁଁନା, କାରଣ ମୋର ଆଶଙ୍କା ହେଉଛି ଏପରି କୌଣସି ଦୁର୍ଯୋଗ ଘଟିପାରେ ଯାହାଫଳରେ ଆମର ବିହାର ସହିତ ମିଶିବା ସମ୍ଭବ ହୋଇ ନ ପାରେ । କେନ୍ଦ୍ରସରକାରଙ୍କ ନିକଟକୁ ଆମର ଓଡ଼ିଆ ନିବେଦନପତ୍ର ପଠାଗଲେ ସେମାନେ ଭାବିନେବେ ଯେ ଏ ଲୋକଗୁଡ଼ିକ ଓଡ଼ିଆ ଏବଂ ତାହାର ଆମର ଉଦ୍ଦେଶ୍ୟସାଧନରେ ବାଧା ପଡ଼ିବ । ତେଣୁ ଆପଣ ମୋ ପାଖକୁ ୨୫ ଖଣ୍ଡ ଇଂରାଜୀ ଓ ୨୫ ଖଣ୍ଡ ଓଡ଼ିଆ ନିବେଦନପତ୍ର ପଠାନ୍ତୁ ।

ଆପଣଙ୍କର
ପି: ଜି: ଦେବ

Top Secret

1

11

My dear Mr Jaipal Singh,

On my return from you I found in the "Indian Nation" an announcement made by Mr. Abdul Quaiyum Ansari, Public works and Rehabilitation Minister, Bihar, which news has also been confirmed by today's paper that the Enquiry Tribunal to investigate the state situation in Kharsawan and Seraikella and submit its findings on the question of merger of the states will sit in 4 about a fortnight time and will conduct the investigation according to the following terms of reference:-

(1) Cultural & linguistic affinity of states with the Provinces concerned;
(2) Administrative convenience &
(3) wishes of the people

In my note given to you yesterday in anticipation of the Tribunal visiting the States early, I suggested certain actions in order that the investigation may be facilitated impartially and satisfactorily. I suggested:

(1) Immediate withdrawal of Sec 144 Cr.P.C. and ~~other~~ other orders and ordinances prohibiting public meetings, demonstrations etc

(3)



of the two States during the first of Enquiries of the ~~Enquiry Commission~~ Tribunal

(2) It is presumed that the Govt of Bihar and Public Bodies should be represented in the Tribunal through their lawyers and legal advisers as well as leaders. It will be in the interest of the parties concerned to nominate their lawyers straightaway and advise them to meet in a conference to devise the line of country action to be taken and undertake preparation of necessary memorandum. I request you to kindly contact the Bihar Government on this subject for their early decision.

We might ~~also~~ have to select also the witness ~~[illegible]~~ and documents to be produced before the Tribunal.

(3) You are meeting your workers tomorrow at Ranchi whom you may have to instruct on the question and the line & nature of propaganda to be undertaken by them. I suggest to you to kindly depute to Seraikela & Kharsawan at least one dozen ~~[illegible]~~ for each State of more capable and efficient workers. They will be required to stay on in Seraikela and Kharsawan till the work of the Tribunal

Anyway since the Tribunal's recommendation on the subject will greatly shape the final decision on the ~~subject~~ matter, it is absolutely necessary now to ascertain views of the Government and advise the workers to agitate the matter accordingly in order that the Tribunal may ~~be in fa~~ hear the wishes of the people on this important matter.

I would also suggest that in a meeting at Tatanagar on the 18th instant, you may also indicate your views there so that the people may know their stand in the Tribunal. I would meet you here on the 17th and further discuss the question. If however, you are printing your speech for Tatanagar Rally I hope you will kindly indicate your views there for guidance of our people.

In view of the urgency of the matter, I am sending my Secretary with this note so that you can take decisions on the subject and advise your workers accordingly.

I am just to make a small suggestion that for the Working Committee Membership for Kharswan, the name of Juraing Subba of Kharswan may be ~~made~~ substituted in place of Saibun Narayan Singh whose name I suggested

(7) 5

Do kindly send your reply with my Secretary.

I am arranging to collect necessary materials and records for preparing the case for of their State.

I hope you had a successful talk with the Maharaja of Mayurbhanj & that he is with us.

With kind regards,

Yours sincerely

[illegible signature]

The Hon'ble Mr. Jaipal Singh
Ranchi

# ଷଡ଼େଇକଲାର କୁମାର ଶ୍ରୀ ବିଜୟ ପ୍ରତାପ ସିଂହ ଦେଓଙ୍କର ଝାଡ଼ଖଣ୍ଡ ନେତା ଶ୍ରୀ ଜୟପାଲ ସିଂହଙ୍କ ନିକଟକୁ ପତ୍ର

## ଗୁପ୍ତପତ୍ର

ପ୍ରିୟ ଶ୍ରୀ ଜୟପାଲ ସିଂହ !

ଆପଣଙ୍କଠାରୁ ଫେରିବା ପରେ ମୁଁ ବିହାରର "ଇଣ୍ଡିଆନ ନେସନ" ସମ୍ବାଦପତ୍ରରେ ବିହାରର ପୂର୍ବ ଓ ପୁନର୍ବସତି ବିଭାଗ ମନ୍ତ୍ରୀ ମିଃ ଅବଦୁଲ କୃଆମ୍ ଆନସାରିଙ୍କର ଏକ ବିବୃତି ଛପା ହୋଇଥିବାର ଦେଖିଲି । ଆଜିର ସମ୍ବାଦପତ୍ରରେ ମଧ୍ୟ ସେ କଥା ପୁଣି ବାହାରିଛି । ଷଡ଼େଇକଲା ଓ ଖରସୁଁଆରେ ସବୁ ବିଷୟ ତଦନ୍ତ କରି ଏହି ଦୁଇଟି ଦେଶୀୟ ରାଜ୍ୟ କାହା ସଙ୍ଗେ ମିଶିବ ସେ ସମ୍ପର୍କରେ ତାଙ୍କର ମତ ଦେବାପାଇଁ ଟ୍ରିବ୍ୟୁନାଲ ପ୍ରାୟ ୧୫ ଦିନ ମଧ୍ୟରେ ବସିବ । ନିମ୍ନଲିଖିତ ବିଷୟରେ ସେମାନେ ଅନୁସନ୍ଧାନ କରି ମତ ଦେବେ:—

(୧) ସଂପୃକ୍ତ ପ୍ରଦେଶମାନଙ୍କ ସହ ସାଂସ୍କୃତିକ ଓ ଭାଷାଗତ ସାମଞ୍ଜସ୍ୟ

(୨) ଶାସନଗତ ସୁବିଧା

(୩) ଲୋକସାଧାରଣଙ୍କ ମତାମତ

ଆପଣଙ୍କୁ ଗତକାଲି ମୁଁ ଯେଉଁ ଲେଖା ଦେଇଛି ସେଥିରେ ଟ୍ରିବ୍ୟୁନାଲ ଏହି ଦୁଇ ଗଡ଼ଜାତି ଆସିବା ବେଳକୁ କଣ କଣ କରିବା ଦରକାର ତାହାର ସୂଚନା ଦେଇଥିଲି । ତଦନ୍ତ ଯେପରି ନିରପେକ୍ଷ ଓ ସନ୍ତୋଷଜନକ ଭାବରେ ହୁଏ ସେଥିପାଇଁ ମୁଁ କହିଥିଲି ଯେ

(୧) ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୪୪ ଧାରା ଓ ଅନ୍ୟ ଆଇନ କାନୁନବଳରେ ସାଧାରଣ ସଭାସମିତି, ବିକ୍ଷୋଭପ୍ରଦର୍ଶନ ଇତ୍ୟାଦି ବନ୍ଦ କରିବାକୁ ଯେଉଁସବୁ ଆଦେଶ ଜାରି କରାଯାଇଛି ତାହା ଉଠାଇ ନେବାକୁ ହେବ ।

ଖବର ମିଳୁଛି ଯେ ଓଡ଼ିଶା କର୍ତ୍ତୃପକ୍ଷ ଏହି ଦୁଇଟି ଗଡ଼ଜାତରେ ବିହାର ସଙ୍ଗେ ମିଶ୍ରଣ ପାଇଁ ଲୋକେ ଯେପରି ଆନ୍ଦୋଳନ ନ କରନ୍ତି ସେଥିପାଇଁ ତାଙ୍କର ପ୍ରଭାବ ପ୍ରୟୋଗ କରୁଛନ୍ତି ଓ ଲୋକଙ୍କୁ ଧମକଚମକ ଦେଉଛନ୍ତି । ଓଡ଼ିଶାପକ୍ଷ ସମର୍ଥନ କରିବା ପାଇଁ ସେମାନେ ଲୋକଙ୍କୁ ନାନା ପ୍ରଲୋଭନ ଦେଖାଉଛନ୍ତି । ପୂରାପୂରି ଏଠାରେ ଏକତରଫା କାମ ଚାଲିଛି ଏବଂ ଲୋକେ ଓଡ଼ିଶା ବିରୁଦ୍ଧରେ କାମ କରିବାକୁ ଭୟ କରୁଛନ୍ତି । ସହ ନିରପେକ୍ଷ ତଦନ୍ତ ହେବାର କଥା ତେବେ ଏହା ଚାଲି ନ ପାରେ ।

ଏଭଳି ଅବସ୍ଥାରେ ଯେଉଁସବୁ ନିଷେଧଆଦେଶ ରହିଛି ତାହା ତୁରନ୍ତ ଉଠିଯିବା ଉଚିତ୍ ଏବଂ ଲୋକେ ତାଙ୍କ ମତାମତ ପ୍ରକାଶ ପାଇଁ ସଭାସମିତି ଇତ୍ୟାଦି କରିବାର ସୁବିଧା ପାଇବା ଉଚିତ । ଟ୍ରିବ୍ୟୁନାଲ ଅତି ନିକଟରେ ଆସୁଛନ୍ତି, ତେଣୁ ଏହା ଅତି ଜରୁରୀ । ଆପଣ ଅନୁଗ୍ରହ କରି ସମ୍ପୃକ୍ତ ସରକାରମାନଙ୍କୁ ଚିଠି ଲେଖି ଏ ବିଷୟ କହନ୍ତୁ ଓ ବିହାର ସରକାର ଯେଭଳି ଏ ଦାବୀ କରନ୍ତି ସେଥିପାଇଁ ବିହାର ସରକାରଙ୍କୁ ଅନୁରୋଧ କରନ୍ତୁ । ଯେତେ ଶୀଘ୍ର ଏହା ହୋଇପାରେ ଆମର ବିଜୟ ସେତେ ସୁନିଶ୍ଚିତ । ତେଣୁ ଅତି ଶୀଘ୍ର ଏ ସଂକ୍ରାନ୍ତ କାର୍ଯ୍ୟ କରିବାକୁ ହେବ । ଟ୍ରିବ୍ୟୁନାଲ୍ ତଦନ୍ତ କଲା କାଳରେ ଏହି ଦୁଇ ରାଜ୍ୟର ଶାସନ ଏକ ନିରପେକ୍ଷ ସଂସ୍ଥା ହାତରେ ରଖାଯାଉ ବୋଲି ବରାବର ଦାବୀ କରିବା ଦରକାର ।

(୨) ଅନୁମାନ ହେଉଛି ଯେ ଟ୍ରିବ୍ୟୁନାଲ୍ ଆଗରେ ବିହାର ସରକାର ଓ ବିହାରର ସାଧାରଣ ଅନୁଷ୍ଠାନମାନଙ୍କ ପକ୍ଷରୁ ଓକିଲ, ଆଇନ ପରାମର୍ଶଦାତା ଓ ନେତୃବର୍ଗ ବାହାରି ଲଢ଼ିବେ । ସମ୍ପୃକ୍ତ ସମସ୍ତ ପକ୍ଷଙ୍କ ସ୍ୱାର୍ଥ ଦୃଷ୍ଟିରୁ ସମସ୍ତେ ନିଜ ନିଜ ଓକିଲ ମନୋନୀତ କରି ଯେଉଁଭଳି ଏକ ହୋଇ କାମ କରିବେ ସେଥିପାଇଁ ଏକତ୍ର ବସି କାର୍ଯ୍ୟପନ୍ଥା ସ୍ଥିର କରିବା ଉଚିତ ଓ ପ୍ରୟୋଜନୀୟ ସ୍ମାରକପତ୍ର ପ୍ରସ୍ତୁତ କରିବା ଉଚିତ । ମୋର ଅନୁରୋଧ ଆପଣ ବିହାର ସରକାରଙ୍କ ସହିତ କଥାବାର୍ତ୍ତା କରି ଏ ବିଷୟରେ ସେମାନେ ଯେଉଁଭଳି ଶୀଘ୍ର ନିଷ୍ପତ୍ତି କରନ୍ତି ତାର ସୁବିଧା କରନ୍ତୁ ।

ଟ୍ରିବ୍ୟୁନାଲ ଆଗରେ କିଏ କିଏ ସାକ୍ଷ୍ୟ ଦେବେ ଓ କେଉଁ କେଉଁ ଦଲିଲପତ୍ର ଉପସ୍ଥାପିତ କରାଯିବ ତାହା ମଧ୍ୟ ଆମର ସ୍ଥିର କରିଦେବା ଉଚିତ ।

(୩) ଆସନ୍ତାକାଲି ଆପଣ ଆପଣଙ୍କ କର୍ମୀମାନଙ୍କୁ ରାଞ୍ଚିଠାରେ ଭେଟୁଛନ୍ତି । ସେଠାରେ ଏ ବିଷୟରେ କି ବାଟରେ ଓ କି ରୀତିରେ ପ୍ରଚାର କରିବାକୁ ହେବ ସେ ସମ୍ପର୍କରେ ସେମାନଙ୍କୁ ନିର୍ଦ୍ଦେଶ ଦେବାକୁ ପଡ଼ିବ । ମୋର ପ୍ରସ୍ତାବ ଯେ ଆପଣ ସରାଇକଲା ଓ ଖରସୁଆଁ ପ୍ରତ୍ୟେକ ରାଜ୍ୟକୁ ୧୨ ଜଣ ଲେଖାଏଁ ବଛା ବଛା କର୍ମୀ ପଠାନ୍ତୁ । ଟ୍ରିବ୍ୟୁନାଲ କାମ ଶେଷ ହେବା ପର୍ଯ୍ୟନ୍ତ ସେମାନେ ସେଠାରେ ରହିବେ । ମନେ ରଖନ୍ତୁ ସରାଇକଲା ଓ ଖରସୁଆଁ ହେଉଛି ପରୀକ୍ଷାଭୂମି ଏବଂ ସମଗ୍ର ଝାଡ଼ଖଣ୍ଡ ଆନ୍ଦୋଳନରେ ଅସଲ ପରୀକ୍ଷା ଏହିଠାରେ ହେବ ଏବଂ ଏଠାର ଜୟ ପରାଜୟ ଉପରେ ଆମର ଭବିଷ୍ୟତ ସଫଳତା ବହୁପରିମାଣରେ ନିର୍ଭର କରିବ ।

ମୁଁ ଆପଣଙ୍କୁ ଯେଉଁ ଲେଖା ଦେଖାଇଥିଲି ସେଥିରେ ଭାରତ ସରକାର ଏବଂ ଗଡ଼ଜାତ ରାଜାମାନଙ୍କ ମଧ୍ୟରେ ହୋଇଥିବା ଚୁକ୍ତି ଫଳରେ ଯେଉଁ ପରିସ୍ଥିତି ଉପୁଜିଛି ସେ କଥା ବୁଝାଇ ଦେଇଛି । ମୋ ଲେଖାର ଏକ କପି ମଧ୍ୟ ଏଥି ସହିତ ପଠାଉଛି । ରାଜାମାନେ ତାଙ୍କର ରାଜ୍ୟ ବା ସାର୍ବଭୌମ କ୍ଷମତା କୌଣସିଟି ଛାଡ଼ିଦେଇ ନାହାନ୍ତି । ତେଣୁ ରାଜ୍ୟରେ ଶାସନକାର୍ଯ୍ୟ କିଏ ଚଳାଇବ କେବଳ ସେଇକଥା ଟ୍ରିବ୍ୟୁନାଲ ବିଚାର କରିବେ । ଗଡ଼ଜାତର ଶାସନ ପ୍ରଦେଶର ଶାସନସହ ପୂରାପୂରି ମିଶିଯିବ କିମ୍ବା ଆଂଶିକ ମିଶି ଗଡ଼ଜାତ ପାଇଁ କେତେକ ପରିମାଣରେ ସ୍ୱାତନ୍ତ୍ର୍ୟ ରହିବ ଏବଂ ଗଡ଼ଜାତ ପ୍ରଜାଙ୍କର ରାଜାଙ୍କସହ ଏକ ବୈଧାନିକ ସମ୍ପର୍କ ରହିବ ସେ ବିଷୟରେ ଟ୍ରିବ୍ୟୁନାଲ ସୁପାରିଶ କରିବେ ।

ଲୋକେ ତ ଚାହାନ୍ତି ଯେ ରାଜାଙ୍କ ଅଧୀନରେ ତାଙ୍କୁ ତାଙ୍କ ରାଜ୍ୟରେ ସ୍ୱାତନ୍ତ୍ର୍ୟ ମିଳୁ । ଆପଣ ମଧ୍ୟ ଠିକ ଏହି କଥା କହୁଛନ୍ତି । ତା ହେଲେ ସେମାନେ ଏ ପର୍ଯ୍ୟନ୍ତ ଯେଉଁଭଳି ସ୍ୱାଭାବିକ ରୀତିରେ କାର୍ଯ୍ୟ କରିଆସିଛନ୍ତି ସେହିଭଳି କରିପାରିବେ । ତା ନ ହେଲେ ସେମାନେ କୁଆଡ଼େ ମୂଳପୋଛ ହୋଇଯିବେ; ଶହ ଶହ ବର୍ଷ ହେଲା ଏହି ଭୂଇଁରେ ରହିବା ଫଳରେ ସେମାନଙ୍କର ଯେଉଁ ପ୍ରତିପତ୍ତି ଏବଂ ସ୍ୱାର୍ଥ ରହିଛି ତାହା ସେମାନେ ହରାଇବେ । ଲୋକେ ଚାହାନ୍ତି ଯେ ତାଙ୍କର ରାଜା ରହିଥାନ୍ତୁ; ଯେପରି କି ସେମାନଙ୍କ ଅଭାବ ଅଭିଯୋଗ ସେମାନେ ତାଙ୍କୁ ଜଣାଇ ପ୍ରତିକାର ଲୋଡ଼ିପାରିବେ—ସେମାନେ ସ୍ୱାତନ୍ତ୍ର୍ୟ ଅର୍ଥାତ୍ ଦାୟିତ୍ୱମୂଳକ ସରକାର ପାଇବା ଉଚିତ । ନିମ୍ନଲିଖିତ ବିଷୟମାନଙ୍କରେ ସେମାନେ ବାହାର ସହିତ ମିଶି ରହିବାକୁ ଚାହାନ୍ତି :—

(୧) ହାଇକୋର୍ଟ

(୨) ଗଡ଼ଜାତର ପୁଲିସ ଫୌଜଙ୍କ ତତ୍ତ୍ୱାବଧାନ କରିବାପାଇଁ ପୁଲିସ-ବିଭାଗର ଆଇ: ଜି:

(୩) ପ୍ରଦେଶର କଞ୍ଜରଭେଟର ଜେନେରାଲଙ୍କ ପରିଦର୍ଶନାଧୀନରେ ଜଙ୍ଗଲ ବିଭାଗ ଶାସନନୀତି

(୪) ପାରସ୍ପରିକ ସ୍ୱାର୍ଥସଂକ୍ରାନ୍ତ ବିଷୟ

(୫) ରାଜପଥ ଇତ୍ୟାଦି ଯୋଗାଯୋଗ ବ୍ୟବସ୍ଥା

(୬) ଅବକାଶ ନୀତି

(୭) ମିଳିତ ସଶସ୍ତ୍ର ପୁଲିସବାହିନୀ

(୮) ପ୍ରାଦେଶିକ କୃଷିବିଭାଗର ମୁଖ୍ୟଙ୍କ ତତ୍ତ୍ୱାବଧାନରେ କୃଷି ଓ ପଶୁଚିକିତ୍ସା ସଂପର୍କୀୟ ମାଠ

(୯) ଉଚ୍ଚତର ସାଧାରଣ ଶିକ୍ଷାନୁଷ୍ଠାନ ଏବଂ ବିଶ୍ୱବିଦ୍ୟାଳୟ ଇତ୍ୟାଦି ।

ଆମେ ଏସବୁ ବିଷୟ ବିହାରସରକାରଙ୍କ ପ୍ରତିନିଧିଙ୍କ ସଙ୍ଗେ ଆଲୋଚନା କଲେ ଭଲ ହେବ; କାରଣ ଏହି ଗଡ଼ଜାତ ଏବଂ ତହିଁର ରାଜାମାନେ ଲୋପପାଇ ଯାଆନ୍ତୁ ଏହା ବିହାର ସରକାରଙ୍କର କଦାପି ଇଚ୍ଛା ନୁହେ । ଯାହାହେଉ ଏ ସମ୍ପର୍କରେ ଟ୍ରିବ୍ୟୁନାଲ ଯେଉଁ ସୁପାରିଶ କରିବେ ତାହା ଶେଷ ନିଷ୍ପତ୍ତିକୁ ବହୁ ପରିମାଣରେ ପ୍ରଭାବିତ କରିବ । ତେଣୁ ସରକାରଙ୍କ ମନୋଭାବ ଜାଣି ତଦନୁସାରେ ଆନ୍ଦୋଳନ କରିବାପାଇଁ କର୍ମୀମାନଙ୍କୁ ପରାମର୍ଶଦେବା ବର୍ତ୍ତମାନ ନିହାତ ଦରକାର । ତାହାହେଲେ ଏ ସମ୍ପର୍କରେ ଲୋକମାନଙ୍କର ମତାମତ ଟ୍ରିବ୍ୟୁନାଲ ଜାଣିପାରିବେ ।

ମୁଁ ଆଉ ମଧ୍ୟ ପ୍ରସ୍ତାବ କରୁଛି ଯେ ଟାଟାନଗରଠାରେ ଆସନ୍ତା ୧୮ ତାରିଖ ଦିନ ସାଧାରଣ ସଭାରେ ଆପଣ ଏସମ୍ପର୍କରେ ଆପଣଙ୍କ ମତାମତ ଜଣାଇଦିଅନ୍ତୁ ଯେପରି କି ଲୋକେ ଟ୍ରିବ୍ୟୁନାଲ ଆଗେ ଆମେ କି ଦାବୀ କରିବା ତାହା ସ୍ପଷ୍ଟଭାବରେ ଜାଣିପାରିବେ । ମୁଁ ଆପଣଙ୍କ ସଙ୍ଗେ ୧୭ ତାରିଖ ଦିନ ସାକ୍ଷାତ କରି ପୁଣି ଏ ବିଷୟରେ ଆଲୋଚନା କରିବି । ଯଦି ଟାଟାନଗରସମ୍ମିଳନୀ ପାଇଁ ଆପଣଙ୍କ ଭାଷଣ ଛପା ହେଉଥାଏ ତେବେ ସେଥିରେ ଆପଣ ଅନୁଗ୍ରହକରି ଆମ ଲୋକଙ୍କୁ ଆପଣଙ୍କ ମନୋଭାବ ଜଣାଇଦେବେ ।

ବିଷୟର ଗୁରୁତ୍ୱ ଦୃଷ୍ଟେ ମୁଁ ଏ ଲେଖା ମୋ ସେକ୍ରେଟେରୀଙ୍କ ହାତରେ ଆପଣଙ୍କ ପାଖକୁ ପଠାଉଛି । ଆପଣ ଏ ବିଷୟରେ ନିଷ୍ପତ୍ତିକରି ଆପଣଙ୍କ କର୍ମୀମାନଙ୍କୁ ନିର୍ଦ୍ଦେଶ ଦେବେ ।

ମୋର ଆଉ ଗୋଟିଏ ସାମାନ୍ୟ ପ୍ରସ୍ତାବ ହେଉଛି ଯେ ଖରସୁଆଁ ପାଇଁ ଯେଉଁ କାର୍ଯ୍ୟକାରୀ କମିଟି ଗଢ଼ାଯାଉଛି ସେଥିରେ ଶୈଳେନ୍ଦ୍ର ନାରାୟଣ ସିଂହଙ୍କୁ ନିଆଯିବା ପାଇଁ ମୁଁ ପ୍ରସ୍ତାବ ଦେଇଥିଲି । କିନ୍ତୁ ତାଙ୍କ ପରିବର୍ତ୍ତେ ଖରସୁଁଆର ଯୁବରାଜ ସାହେବଙ୍କୁ ନେଲେ ଭଲ ହେବ । ଅନୁଗ୍ରହ କରି ମୋ ସେକ୍ରେଟେରୀଙ୍କ ହାତେ ଉତ୍ତର ପଠାଇବେ ।

ଏହି ସବୁ ଗଡ଼ଜାତଙ୍କ ପକ୍ଷ ସମର୍ଥନ କରିବା ପାଇଁ ମୁଁ ଆବଶ୍ୟକୀୟ ତଥ୍ୟାତଥ୍ୟ ଓ ଦଲିଲପତ୍ର ସଂଗ୍ରହ କରୁଛି ।

ମୟୂରଭଞ୍ଜ ମହାରାଜାଙ୍କ ସଙ୍ଗେ ଆପଣଙ୍କ ଆଲୋଚନା ସଫଳ ହୋଇଛି ଏବଂ ସେ ମଧ୍ୟ ଆମ ପକ୍ଷରେ ଅଛନ୍ତି ବୋଲି ମୁଁ ଆଶା କରେ ।

ମୋର ଯଥାବିଧି ଜାଣିବେ
ଆପଣଙ୍କର ବିଶ୍ୱସ୍ତ

ମାନ୍ୟବର ଜୟପାଳସିଂହ
ରାଞ୍ଚି

ସ୍ୱାଃ ବିଜୟ ପ୍ରତାପ ସିଂହ ଦେଓ

# ସିଂହଭୂମ ଜିଲ୍ଲ ଓ ତହିଁର ଲୋକସଂଖ୍ୟା

ଏହି ଜିଲ୍ଲାରେ ତିନୋଟି ସବ୍‌ଡିଭିଜନ ଅଛି; ଯଥା— (୧) ସଦର ସବ୍‌ଡିଭିଜନ, (୨) ଷଡ଼େଇକଳା ସବ୍‌ଡିଭିଜନ ଓ (୩) ଧଳଭୂମ ସବ୍‌ଡିଭିଜନ । ଖରସୁଆଁ ରାଜ୍ୟ ଷଡ଼େଇକଳା ସବ୍‌ଡିଭିଜନ ଅନ୍ତର୍ଗତ ।

୧୯୫୧ ମସିହା ଭାରତ ସରକାରଙ୍କ ଜନଗଣନା ରିପୋର୍ଟ ଅନୁସାରେ ସମଗ୍ର ସିଂହଭୂମ ଜିଲ୍ଲ ଓ ସ୍ୱତନ୍ତ୍ର ଭାବରେ ୩ ଗୋଟି ସବଡ଼ିଭିଜନର ଲୋକ ସଂଖ୍ୟା ଓ ବିଭିନ୍ନ ଜାତିର ଲୋକ ସଂଖ୍ୟା—

| | ମୋଟ ଲୋକସଂଖ୍ୟା | ଓଡ଼ିଆ ଜନସଂଖ୍ୟା | (ଶତକଡ଼ା) | ବଙ୍ଗାଳି ଜନସଂଖ୍ୟା | (ଶତକଡ଼ା) | ହିନ୍ଦୁସ୍ଥାନୀ ଜନସଂଖ୍ୟା | (ଶତକଡ଼ା) | ଆଦିବାସୀ ଜନସଂଖ୍ୟା | (ଶତକଡ଼ା) |
|---|---|---|---|---|---|---|---|---|---|
| ସିଂହଭୂମ ଜିଲ୍ଲ | ୧୪୮୦୮୧୬ | ୨୯୭୬୨୯ | ୨୦.୦୯ | ୨୬୮୨୮୫ | ୧୮.୧୬ | ୨୧୨୬୬୯ | ୧୪.୩୬ | ୬୩୮·୧୮୦ | ୪୩.୬୬ |
| ସଦର ସବ୍‌ଡିଭିଜନ | ୬୭୯୦୩୬ | ୧୦୪୭୭୯ | ୧୭.୧ | ୩୦୨୭୦ | ୪.୯ | ୩୪୫୫୪ | ୫.୭ | ୪୦୩୭୯୨ | ୬୫.୩ |
| ଷଡ଼େଇକଳା ସବ୍‌ଡିଭିଜନ | ୧୯୧୭୦୭ | ୪୯୩୦୯ | ୨୫.୭ | ୪୩୮୫୭ | ୨୨.୯ | ୨୩୬୩୩ | ୧୨.୩ | ୭୪୩୨୦ | ୩୮.୭୭ |
| ଧଳଭୂମ ସବ୍‌ଡିଭିଜନ | ୬୦୪୦୭୩ | ୧୨୮୪୯୨ | ୨୧.୧ | ୧୮୫୮୩୨ | ୩୦.୮ | ୧୨୫୧୦ | ୨୧.୩ | ୧୧୯୭୪୧ | ୧୯.୮ |

